# ଯା' ଆକାଶ ହୋଇଯା



ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ

# ଯା' ଆକାଶ ହୋଇଯା

ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ



# ଯା' ଆକାଶ ହୋଇଯା

(କବିତା ସଂକଳନ)

**ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ**

୬୭, ସରସ୍ୱତୀ କୁଂଜ, ଜାଗମରା, ଖଣ୍ଡଗିରି, ଭୁବନେଶ୍ୱର-୩୦

ମୋ-୯୪୩୭୨୫୬୧୭୬

ପ୍ରକାଶକ :

**ଅପୂର୍ବା**

୧୦୪୬-ଡି, ଚଣ୍ଡିମାତା କଲୋନି,

ରସୁଲଗଡ଼, ଭୁବନେଶ୍ୱର - ୭୫୧୦୧୦

ପ୍ରଥମ ସଂସ୍କରଣ : ଅପ୍ରେଲ୍ ୨୦୧୪

ମୁଦ୍ରଣ : ଅପୂର୍ବା ଅଫ୍‌ସେଟ୍, ଭୁବନେଶ୍ୱର

ପ୍ରଚ୍ଛଦ : କ୍ଷୀରୋଦ ପତି

ମୂଲ୍ୟ : ୧୦୦ଟଙ୍କା

## Jaa Akasha Hoija

*A collection of Poems By* **Dr. Fanindra Bhusan Nanda**

67, Saraswati Kunja, Jagamara, Khandagiri

Bhubaneswar-30 Mob.-9437256176

Publisher : **Apurba**

1046 D, Rasulgarh, Bhubaneswar - 751 010

First Edition : April - 2014

Printed at :

Apurba Off-Set, Bhubaneswar, Pin-- 751 010

Cover Design : Kshirod C Pati

**Price : Rs.100 /- ( One hundred only)**

# ଉତ୍ସର୍ଗ

ଶବ୍‌ଦର ଅବତାର ଓ ମୁହୂର୍ତ୍ତର ମୂର୍ତ୍ତି
ଏବଂ
ଊର୍ଦ୍ଧ୍ୱ ଉଡ଼ାଣ ଓ କାବ୍ୟିକ ଅଂତର୍ଧ୍ୱନି
ଓଡ଼ିଆ ସାହିତ୍ୟର ଦୁଇଟି ଅନନ୍ୟ ଆଲୋଚନା ପୁଷ୍ପ
ଗଦ୍ୟ କିନ୍ତୁ କାବ୍ୟିକତାରେ ଛଳଛଳ
ଏହି ସୃଷ୍ଟିଦ୍ୱୟର ଅମୃତମୟ ସ୍ବପତି
**ଶ୍ରୀଯୁକ୍ତ ନକୁଳ ଚନ୍ଦ୍ର ସାହୁଙ୍କୁ**
'ଯା' ଆକାଶ ହୋଇଯା'
ଶ୍ରଦ୍ଧାର ସହ ସମର୍ପିତ...

**ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ**

# ସୂଚୀପତ୍ର

# ନିଜେ ନିଜ ଦର୍ପଣରେ

ଅନିର୍ଦ୍ଦିଷ୍ଟ ଯାତ୍ରା ଶୈଶବରୁ
ନିରୀହତାରୁ
ଅରଣ୍ୟ ଦାଢ଼ରୁ
ବୟସର ବୃତ୍ତ ସେପଟେ ଯୌବନ
ବସନ୍ତ
ଓ କାଦମ୍ବିନୀର ହସ;
ପ୍ରେମିକାର ନିଷେଧାଦେଶ
ଗୀତର ଶେଷ
କଥାର ଶେଷ
ସ୍ୱପ୍ନ ଭରା ଆକାଶ ।

ଅବଧାରିତ ଗନ୍ତବ୍ୟ
ଗୀତ ସହ
ପ୍ରେମ ସହ,
ମସ୍‌ଗୁଲ ସାମର୍ଥ୍ୟ ସହ
ମାଟିର ଅଙ୍କୁର ତଳେ
ଫୁଟିଛି ତାରାଫୁଲ
ଖୋଜି ଖୋଜି ପାଉନି ନିଜ ମୂଳ
ଆତ୍ମାକୁ କିଲ୍‌ବିଲେଇ ଦେଉଥିବା
ସେଇ ବିଧୁରା ସୁର ।

ଆଜି ଯାତ୍ରା ଆରମ୍ଭ ବେଳେ
ପୁଣି ସେଇ ବିନ୍ଦୁରେ
ଘମାଘୋଟ କାନ୍ଦଣାର ସୁରରେ
ମେଘମେଘ ପ୍ରେମର ଛାୟାରେ
ନିଜର ପ୍ରତିବିମ୍ବ ହୋଇ
ନିଜେ ନିଜ ଦର୍ପଣରେ ।

ସମୁଦ୍ର ସେପାରେ ଖୁବ୍ ଏକେଲା
ଜାହାଜଟେ
ମେଘ ଭର୍ତ୍ତି ଆକାଶର ଅଗଣାରେ
ଝରାଫୁଲ ପରି ତରାଟିଏ
ପ୍ରମତ୍ତ ଅରଣ୍ୟର ଶେଷ ସୀମାରେ
ଏକାକୀ ଥୁଣ୍ଟା ଗଛଟିଏ ।

ବର୍ଷ ବର୍ଷ ଧରି
ଯାତ୍ରା
ବର୍ଷ ବର୍ଷ ଧରି
ପ୍ରସ୍ତୁତି
ମାଟିକୁ ଛାଡି ପାଦ ଆକାଶରେ
ସୁଦୂର ଆଗକୁ ଯିବାର ଅଦମ୍ୟ ଉତ୍ସାହରେ
ଆଚ୍ଛନ୍ନ ମୋହକୁ କାଟି
ପ୍ରଲମ୍ବିତ ପଥରେ ;
ମୁଁ ଜାଣେନା କେତେ ଗତିଶୀଳ
ମୋର ପ୍ରାଣ

କେତେ ପ୍ରଖର ମୋର ପାଦ
କେତେ ଦୀର୍ଘ ମୋର ଗନ୍ତବ୍ୟ
ମୁଁ ନୟାନ୍ତ
ସେଇ ଶୈଶବ ବିନ୍ଦୁରେ
ପ୍ରତିବିମ୍ବ ହୋଇ
ନିଜେ ନିଜ ଦର୍ପଣରେ ।



# ଗଛଲଗା

ଗଛଲଗା ଏକ ସଡକ
ନା' କଣ ?
ଧାଡି ଧାଡି ଶାଳ ମହୁଲ ଅସନ
ତା ପଛକୁ ୟୁକାଲିପଟାସ ଆକାଶିଆ
ନିମ୍ବ ବର ଅଶ୍ୱତ୍ଥ
ଫାଶି ।

ରଥକାଠ ପାଇଁ ଦରକାର ଫାଶି
ହରିଡା ବାହାଡା ଅଁଳା ଔଷଧି
ପତରା ଜଙ୍ଗଲରେ ଗଛଲଗା ଚାଲିଛି
ହୁରୁଡି ଯାଉଛନ୍ତି ହରିଣ ଠେକୁଆ
ଗାତ ତଳେ ଗୋଧି ଓ ସାପ ।

ଗଛ ଲଗା ଚାଲିଛି
ଅସଂଖ୍ୟ ଲୋକ ଖେଦି ଯାଉଛନ୍ତି
ଟାଙ୍ଗରା ପାହାଡ
ଛୋଟ ଛୋଟ ଚାରା ଏକ ଘନଫୁଟ
ଗାତ ଭିତରେ ପୋତି ହୋଇ
ଆକାଶରୁ ଟାଣୁଛନ୍ତି ପୋଷେ ଲେଖାଏଁ
ଜୀବନ ।

ଏମାନେ ଚାରା, ଦିନେ ଦ୍ରୁମ ହେବେ
ଏମାନେ ରଖିବେ ପରିବେଶକୁ ପରିଷ୍କାର
ଏମାନେ ବାସ ଯୋଗାଇବେ ପକ୍ଷୀଙ୍କୁ
ପଶୁଙ୍କୁ ସରୀସୃପଙ୍କୁ
ଏମାନେ ଫୁର୍ତ୍ତିରେ ହଲୁଛନ୍ତି ପବନ ସହ
ଗୀତ ଗାଉଛନ୍ତି ଧାଙ୍ଗିଡୀ ସହ ।

କାଳୀ ଗାଈଟିଏ ପାକୁଳି କରୁଛି
ଥରକେ ଗୋଟିଏ ଚାରା
ତା'ର ଆଁ ଭିତରେ
ସର୍ବଗ୍ରାସୀ କ୍ଷୁଧା ;
ଗଛଲଗା ମଣିଷ ବେଧଡକ୍
ଶୋଇଛି
ସ୍ୱପ୍ନରେ ଦେଖୁଛି
ସାବ୍‌ଜା ସାବ୍‌ଜା ବେହରଣ
ତଳେ
ସୁନ୍ଦର ପୃଥିବୀ
ଘନଘୋର ଗଛ ତଳେ
ପକ୍ଷୀଙ୍କ କାକଳୀ ;

ହେ ଗଛଲଗାଳୀ
ସ୍ୱପ୍ନ ଦେଖାରୁ ଉଠ୍,
ପାଲଟି ଯା' ଗଛ
ଦେଖ୍ କେମିତି ମାଟି

ଜାବୁଡି ଧରେ ଗୋଡ,
ଆକାଶ ଡାକେ ଆ
ଗାଈ ପାକୁଳି ଭିତରେ
ହାହାକାରର ଦୃଶ୍ୟ ।

କାଠୁରିଆର କୁଠାର ମୂନରେ
ଗାଢ଼ ନୀଳରକ୍ତ
ପବନର ଅଦୃଶ୍ୟ ଇଙ୍ଗିତରେ
ଛପିଥାଏ ଧ୍ୱଂସର ତାଣ୍ଡବ
ଆ, ଅନୁଭବିବୁ
କେମିତି ସୃଷ୍ଟିହୁଏ ସବୁଜ ଛନ ଛନ
ଗଛଟିଏ ମାଟିର ଜରାୟୁ ଫାଡି
ରକ୍ତ ନିଗାଡି;

ଆ, ଗଛ ହେଲେ ହିଁ ଜାଣିବୁ
ଗଛ ଲଗାର ଦୁଃଖ
ଗଛ ବଢ଼ାଇବାର ଯାତନା
ଗଛ ଲଗା ସଉକ ନୁହେଁ
ଏକ ସାଧନା ।

❖❖❖

# ପାହାଡ଼ଟିଏ ଥିଲା

ଏଇଠି ପାହାଡଟିଏ ଥିଲା
ଏବେ କାଇଁ
ଜଙ୍ଗଲତ ଅଦୃଶ୍ୟ ଅନେକ ଦିନୁ
କମ୍ପାନୀର ଡୋଜର
ଲୋକଙ୍କ ଭୋକ
ମାଟି ଖାଇ ପଥର ହଜମ କରିଚି ।

ବେଦ ଅଶୁଦ୍ଧ ହୋଇଥିଲା
ଏଇଠି
କିଏ କାଟିଥିଲା ବୋଲି ଅଶ୍ୱତ୍ଥ
ମହୁଘିଅ ଢ଼ାଳି ଶାନ୍ତ କରାହୋଇଥିଲା
ବନଦେବୀଙ୍କୁ
ଆଦିବାସୀ ଦେଇଥିଲେ
କୁକୁଡା ରକ୍ତ ଓ ମଦ ।

ଏଇଠି କିଏ ଅଶୁଚି କରିଥିଲା ବୋଲି
ପଥର
ଗାଁ ଉଠିଥିଲା ପଡିଥିଲା
ଏବେ ନା ରମ୍ଭାଦେବୀ ଅଛି
ନା ଅଛି ବ୍ରାହ୍ମଣୀର ପ୍ରଖର ସୁଅ ।

ପାଙ୍ଗୁଲି ପାହାଡର ବୌଦ୍ଧ କୀର୍ତ୍ତିକୁ
ଉଜାଡି
କଟାଚାଲିଛି ପଥର
ପାହାଡ ଏବେ ସମତୁଲ
ବ୍ରାହ୍ମଣୀ ନିଷ୍ପ୍ରାଣ
ରମ୍ଭାଦେବୀର କିଳିକିଳା
ନାଦ ନିସ୍ପନ୍ଦ ।

ଆସ ବୈଦିକ ମନ୍ତ୍ରକୁ
ଭୂୟାଁଙ୍କ ଚାଙ୍ଗୁତାଳରେ
ଗାଇବା
ଆଦିବାସୀ ସଙ୍ଗୀତକୁ
ରିମିକ୍ସ କରି
ତାଣ୍ଡବ ନାଚିବା ।

କିଏ ଜଣେ ଆସିବ ପରିବ୍ରାଜକ ଶ୍ରମଣ
ପୀତପାଦଙ୍କ ଶିଷ୍ୟ
ଧୀରେ ପାଦଥାପି
ଶାନ୍ତିର ବାର୍ତ୍ତା ଧରି
ଶିଳାରେ ଶିଳାରେ
ପ୍ରାଣ ସଂଚାରି
ବିଚିତ୍ର ଭୂଷଣ ।

ଏଇଠି କୋଉଠି ପାହାଡଟିଏ ଥିଲା
ଖୋଜିବ
ଶିଳାକୁ ଶିଳାକୁ ଆଉଁସିଯିବ
ନଦୀର ସୁଅ ପ୍ରଖର ହେବ
ରାଜରାସ୍ତା ତଳୁ ବାହୁନୁଥିବ ପାହାଡ
ଶିଳାରେ ଶିଳାରେ ଲେଖା ସରିଥିବ,
ଲୌକିକ ଇତିହାସ ।

ଏଇଠି କୋଉଠି ପାହାଡଟିଏ ଥିଲା
ନଦୀଝୁରି ହେଉଥିବ ।



## ଟ୍ରାକ୍ଟର ଡାଳାରେ ଡାଳଖାଇ

ଫୁଲ ଫୁଟିଥିଲା ଚୂଳିଆରେ ।
ଚୂଳିଆ ପାହାଡ ରାଧାନାଥଙ୍କୁ
ଆକୃଷ୍ଟ କରିଥିଲା ମହାଯାତ୍ରାରେ
ସେ ଶୁଣିଥିଲେ ତାର ଶାର୍ଦ୍ଦୁଳ ଗର୍ଜନ
ଗୁଂଫାରେ ଶତାବ୍ଦୀ ତଳର
ଋଷିମାନଙ୍କର ଓଁକାର ଧ୍ୱନି ଇଥରରେ
ସୁରକ୍ଷିତ;
ରାତିହେଲେ କାନ୍ଦେ ଚକ୍ରବାକ ।

ଐତିହାସିକମାନଙ୍କ ଅନାଘ୍ରାତ
କୁମାରୀ ଜଙ୍ଗଲ ଭିତରେ ସହଜିଆ ପ୍ରୀତିର
ଇତିହାସ ରୋମାଞ୍ଚକର
ତାରା ଆଲୁଅରେ ଗଛପତ୍ର ପ୍ରଣୟ ବିଭୋର

ଚୂଳିଆର ଫୁଲ ଢିଲିଙ୍ଗି ମାଝି
ହରିଣ ଚାହାଁଣୀ, ଚାଲିତାର ଅଳସ ଉଲ୍ଲାସ
ଡେଇଁ ବୁଲେ ପଥରୁ ପଥର
ଝର୍ଣ୍ଣାର କବିତା ପରି
ହସତାର ସୁନ୍ଦର ସୁନୀଳ ।

କୁରେଇଁ ଫୁଲର ପାଖୁଡା
ଝର୍ଣ୍ଣାରେ ପଡେ
ଜହ୍ନ ଆଲୁଅରେ ଝଲସିଯାଏ
ଅଧା ପଖଲା ଦିହ
ସର୍ଗି ମଞ୍ଜିର ପାଛିଆ ତଳୁ ଉଂକିମାରେ
କୁଆଁରୀମନ
ବୌଦ୍ଧ ଯୁଗୀୟ ଯନ୍ତ୍ରଣାଟେ
ସରୀସୃପ ପରି ଗୁଡେଇ ହୁଏ ଛାତିରେ
ଅନବରତ କରତ ଚାଲିଥାଏ ମଳୟର ହୃଦୟରେ ।

ଆଖି ନାଚୁଥାଏ ଜିଲିଙ୍ଗିର
ଛଳଛଳ ଝରଣାର ଜଳ
ମନସାରା ଆକାଶର ନୀଳ
ବାଲି ଭର୍ତ୍ତି ଟ୍ରାକ୍ଟରରେ ଉଡିଯାଉଥାଏ
କାନି, ସ୍ୱପ୍ନପରି ଲାଲ ସଡକର ଧୂଳି
ଝାଡି ଦେଉଥାଏ ଧୀରେ, ଦୁଧିଆଳୀ ମେଘର
ବର୍ଷା ପୃଥିବୀର ସଜ ମୁହଁପରି ।

କସ୍ତାତଳେ ଥଳଥଳ ଥନ
ଅକ୍ଷତ ଜଙ୍ଗଲ ପରିଧାନି ଥାଏ
ଗଛପରି ସବୁଜ ଯୌବନ

ସହରର ଧୂଳିବାଲି ଇଟା କଂକ୍ରିଟ
ଟ୍ରାକ୍ଟର ଡାଲାରେ ନିଦ

ଡ୍ରାଇଭରର ଆଖିର ଇସାରା
ତରକା ହରିଣୀ ପରି ଜିଲିଙ୍ଗିକୁ
ଚମକାଇ ଦିଏ, ହରିଣ ନଦିଏ ଧରା
ବ୍ୟାଧର ଫାଶରେ ।

ଜିଲିଙ୍ଗି ପ୍ରକୃତିର କନ୍ୟା
ଜଙ୍ଗଲର ପଶୁପରି ସୁରକ୍ଷିତ କୁଆଁରୀମନ
ଭଲପାଏ ଝର୍ଣ୍ଣାର ସଂଗୀତ
କୋଇଲିର କୁହୁ
ବେଳେବେଳେ ଆଲବମ୍ ଗୀତରେ
ବିଭୋର
ହସିଖେଳି ରାସ୍ତାଗଢ଼େ, ଚାର ତୋଳେ
କେନ୍ଦୁପତ୍ର ତୋଳି ଫଡିରେ ସଜାଏ
ଗେଟି ପିଟିପିଟି ଅଲରା ବାଳକୁ
ଛାଟିଦିଏ ପଛପଟେ, ଲହୁ ଓ ସ୍ୱେଦରେ
କବିତାଟେ ଆଙ୍କିଦିଏ ସୁଗୋଲ ଗାଲରେ ।

ଜିଲିଙ୍ଗି, ପ୍ରକୃତିର ଅନୂଢ଼ା କବିତା
ସହରକୁ ଘର ତୋଳିଯାଏ
ଗଜା ଟୋକା କଏରୁ ସଙ୍ଗେ ହସିଖେଳି
ଦିନ ବିତିଯାଏ,
ମିସ୍ତ୍ରୀ ବୁଢ଼ା ସାଙ୍ଗେନିଏ ସାଙ୍ଗେ ପୁଣି ଆଣେ ।

କେତେ ମାର୍ବଲ ଚଟାଣରେ
ଜିଲିଙ୍ଗିର ହାତ

ମୋଜାଇକ ଘର ଦେଖିହୁଏ ପୁଲକିତ
ଚାରି ମହଲା ଘର ତଳେ ଖରାବେଳେ
ଖାଇସାରି ଝାଇଁମାରେ
ସପନର କଳା ମଚମଚ ରଜାପୁଅ
ଆସେ,
ନଡ଼ା ଛପରର ଚାଳ ଘରେ ମୁରୁ ମୁରୁ
ହସେ ।

ଗାଁର ଝିଅ ଝରଣାର କୂଳ
ଗଛମୂଳ ଛାଡି
ଟ୍ରାକ୍ଟର ଡାଲାରେ ବିକିଲା ସପନ
ଚାଉଁକରି ଭାଙ୍ଗିଯାଏ ନିଦ
ସହରର ଦିନଠାରୁ
ଗାଁ ରାତି ଅତି ନିରାପଦ ।

କଏଗୁର ଆଶ୍ୱାସନାରେ
ଟ୍ରାକ୍ଟର ଡାଲାରେ ପଣତ ଉଡାଇ
ଡାଲଖାଇ ସାଥେ ଜିଲିଙ୍ଗି
ଗାଁକୁ ଯାଏ ।



ପାଦଟୀକା :
ଚୂଳିଆ: ଦେବଗଡ ଜିଲ୍ଲାର ସ୍ୱନାମଧନ୍ୟ ପର୍ବତ । ଯେଉଁଠି ବୌଦ୍ଧଯୁଗୀୟ ସହଜଯାନର ଗୁମ୍ଫା ରହିଛି ।
ସର୍ଗି: ଶାଳ
କସ୍ତା: ଦେଶୀ ବୁଣା ଶାଢ଼ୀ
ଫଡି : କେନ୍ଦୁପତ୍ର ରଖାଯାଉଥିବା ଗୋଦାମ ଘର

# ଇଚ୍ଛାମୟ

ଆକସ୍ମିକ ତମର ଉଦୟ
ଅସ୍ତ ବି ।
ମୁଁ ଉଭା ଏଗୁଣ୍ଡି ଏପଟେ
ସେପଟରେ ଉଭାନ୍ ତୁମେ ଦୃଶ୍ୟାନ୍ତରର ନାୟକ
ଦ୍ରୋହ ବିଦ୍ରୋହ, ଦେହ ବିଦେହ ଭିତରେ
ତମେ ପ୍ରତିନାୟକଟିଏ
ମୋର ପ୍ରତିଟି ଇଚ୍ଛାକୁ ଜୀବନ୍ୟାସ ଦିଅ ।

କ୍ରୋଧ, ପ୍ରତାରଣା ଓ ମିଥ୍ୟାର ପ୍ରଲେପରେ
ଗଢ଼ାମୋର ଆଭରଣ
ନିର୍ମମ ଆତ୍ମକଥନ
କର୍ମଫଳର କଂକାଳରେ ଜର୍ଜରିତ
ଇହ ପରକାଳ ସମସ୍ତ ସକାଳ ।

ପ୍ରେମରେ ଆସେନା କିଏ
ପ୍ରତାରଣାରେ ଛୁଇଁଦିଏ ଦିହ
ମୁଁ ତମର ନୁହଁ ବିଶ୍ୱର ନୁହଁ
ଚରାଚରର
ଭଗହୀନ ଉଦାର ବିଭଙ୍ଗ ଶରୀର
ବିଡମ୍ବିତ ବିମ୍ବିସାର
ମାୟାର ଦର୍ପଣ ।

କଣ ଚାହୁଁଚ ତମେ
ପ୍ରେମ ନା ଭୋଗ
ରାଜ୍ୟ ନା ଐଶ୍ୱର୍ଯ୍ୟ
ଆତ୍ମା ନା ହୀରଣ୍ମୟ ଶରୀର
ତମ ଅଭିଳାଷ ହିଁ ମୋର କପାଳ ।

ଆତ୍ମାରେ ତମେ ଅଧିଷ୍ଠିତ
ଶରୀରରେ ତମ ଅଧିକାର
କୁରୂପା କୁବ୍‌ଜା ମୁଁ ତୁମ ପ୍ରତି
ଉତ୍ସର୍ଗିତ ଦେହମନ
ଷଡଚକ୍ର ଯାନ
କ୍ଷୋଭଯେତେ ତୁମରି ସ୍ପର୍ଶରେ
ପାଲଟିଯାଏ ପ୍ରେମ ଅନୁପମ ।

ମୋର ପ୍ରଶ୍ନ - ଅନୁତ୍ତରିତ ତମେ
ମୋର ଦ୍ରୋହ- ଅଚଞ୍ଚଳ ତମେ
ମୋର ପ୍ରେମ- ଅକୁଣ୍ଠିତ ତମେ
ତମେ  ପ୍ରେମରେ ନା ପ୍ରତାରଣାରେ
ଦେହରେ ନା ବିଦେହରେ

ଦ୍ରୋହହୀନ ଶରୀରର ଉଚ୍ଚାଟନ
କୂଳଙ୍କଷା ତଟିନୀର ବିଷାଦ ସପନ
କ୍ଷତର ଗମ୍ଭୀରା ତଳେ
ଜର୍ଜରିତ ତାରୁଣ୍ୟର ପୁଣ୍ୟ ତୀର୍ଥସ୍ଥାନ

ପ୍ରେମହୀନ ପ୍ରତୀତିରେ ତମେ ପ୍ରେମମୟ
ଆକସ୍ମିକ ତମର  ଉଦୟ ଓ ଅସ୍ତ
ଇଚ୍ଛାମୟ ତମେ ଇଚ୍ଛାମୟ  ।



# ନାରୀ ଦେହରେ ନିଆଁ

କ୍ରମଶଃ ନାରୀ ଦେହରେ
ଚରୁଥାଏ ନିଆଁ
ଜଙ୍ଗଲରେ ଖେଳୁଥାଏ ପଦ୍ମଗନ୍ଧ
ଗହଗହ ପ୍ରେମପରି
ପତ୍ରର ଗହଳି
କଠିନ ମର୍ମର ତଳେ ଗୁରୁଣ୍ଡୁଥାଏ
ସରୀସୃପ
ଦିହ ଭିତରେ ଭୋଗର ଇନ୍ଦ୍ରଜାଲ
କିଏ ବୁଣୁଥାଏ ଶେଷହୀନ
ପ୍ରେମର ବିହନ ।

କେତେଦିନ ନିଆଁକୁ ଧରି ଚାଲିବ
ଏକାଏକା ବିକ୍ରମାର୍କ
ନାରୀଠାରୁ ଦୂରେଇ
ନଦୀଠାରୁ ଦୂରେଇ
ଅସମର୍ଥ ପ୍ରେମରେ ଜଳାଞ୍ଜଳି ଦେଇ
ଶବ ଝୁଲୁଥିବ ଥୁଣ୍ଟା ଡାଳରେ
ଫୁଲରୁ ଝରୁଥିବ ମହୁ
ମହୁରୁ ସ୍ନେହ
ସ୍ନେହରୁ ଥପ୍ ଥପ୍ ଅମୃତ

ଅମୃତ ଭିତରେ ଶିହରି ଉଠୁଥିବ
ପ୍ରତିବିମ୍ବ ଶବ୍‌ଦର
ଆକସ୍ମିକ ବଦଳି ଯାଉଥିବ ଦିଗନ୍ତ

ନିଆଁ ଭିତରୁ ଖେଳୁଥିବ
ଲହଡି
ଲହଡିରେ ଦୃଶ୍ୟମାନ ଆତ୍ମା
ପୂର୍ବଜମାନଙ୍କ
ପ୍ରକୃତିର ମିଥୁନ ଲଗ୍ନରେ
ବିଡମ୍ବନାର ଜୀବନ ହଜୁଥାଏ
ଆତ୍ମାରେ ଆତ୍ମାରେ ସଂଚରି ଯାଉଥାଏ
ଶିହରଣ
ପୃଥିବୀର ଜରାୟୁ ଭିତରେ
ବିଶ୍ୱରୂପ
ବିଶ୍ୱରୂପ ଭିତରେ ଆଲୋକିତ ସ୍ୱପ୍ନ
ସ୍ୱପ୍ନରେ ଚାରାଟିଏ ବୀଜପତ୍ର ମେଲେ
ଡଙ୍ଗରର ଧାଙ୍ଗଡୀ ଗାଉଥାଏ
ପାହାଡି କେଦାର ।

କିଏ ଦିଏ, କିଏ ନିଏ
ପରଂପରାର ପରାଭବ ?
ବ୍ୟବଧାନ ଭିତରେ କମିଆସେ
ଦୂରତ୍ୱ
ନିଆଁ ହୁତ୍ ହୁତ୍ ଡାଆଁଣୀ ଆଲୁଅ

ନାରୀ ଜଳୁଥାଏ ଜଳାଉଥାଏ
ସମଗ୍ର ଇତିହାସ
ଇତିହାସ ଭିତରେ ଦୃଶ୍ୟ
ଦ୍ରୋହ ବିଦ୍ରୋହ ପ୍ରେମ ପ୍ରତାରଣା
ସରୀସୃପର ଶୀତଳ ସ୍ୱପ୍ନ
ପିରାମିଡ ଭିତରେ ସାଇତା
ପରବର୍ତ୍ତୀ ସମୟର କୋହ
କୋହ ଭିତରେ ସଜାଡୁଥାଏ
ସ୍ମୃତିର ଫରୁଆ
ପିଶାଚୀର ଲୁହ
ଲାଲ ପଳାଶ ଫୁଲର ଡାକ
ଅନ୍ତ ଫାଡି ଜନ୍ମଦିଏ ଧ୍ୱନିମୟ
ଚଢ଼େଇର ନିଷ୍ଫଳ ଚିତ୍କାର
ଚିତ୍କାରକୁ କିଏ କହେ ଗୀତର ଭଣିତା ।
କିଏ କହେ ଅପୂର୍ବ କବିତା ।

ଆକାଶରେ ଉଭାନ ପକ୍ଷୀ
କବିତାରୁ ଉଭାନ ଶବ୍ଦ
ଶବ୍ଦରୁ ଉଭାନ ଆତ୍ମା
ଆତ୍ମାରୁ ଉଭାନ ପରିଚୟ
ଆକସ୍ମିକ ବଦଳିଯାଏ ଅନ୍ୱୟ

ସାରା ଆକାଶଟା ଶୂନ୍ୟସ୍ଥାନ
ସାରା କବିତାଟା ଶୂନ୍ୟସ୍ଥାନ

ଶବ୍ଦ ଏକ କାକପଦ
ଧ୍ୱନି ଏକ ପ୍ରଶ୍ନଚିହ୍ନ
ଆଖିରେ ଆଖିରେ ସଂଚରୁଥାଏ ଭାବ
ଭାବରେ ଭାବରେ ଖେଳୁଥାଏ ପ୍ରେମ
ପ୍ରେମରେ ପ୍ରେମରେ ଜମୁଥାଏ ରମଣ
ରମଣରେ ସମୟର ଧରାବତରଣ
ରତରତ ସମୟର ଅପୂର୍ବ ମିଳନ
ନାରୀ ପାଲଟୁଥାଏ ହୁତାଶନ ।



# ଶବଦର କାୟାକଳ୍ପ

ରତି ଭିତରେ ଖୋଜୁଥାଏ ଅଙ୍ଗବସ୍ତ୍ର
କିଏ ?
ବକଳ ଭିତରୁ ବଞ୍ଚିବାର ରାହା ଅନ୍ୱେଷୁ ଥାଏ
କିଏ ?
କିଏ ସେ ଭୂମିକଂପ ଭିତରେ
ଆର୍ତ୍ତନାଦରେ ଗତିରେ ମୁକ୍ତିରେ
ଛଳଛଳ ଆବେଗରେ
ମହମହ ପ୍ରଣୟରେ
କ୍ଷୁଶବିଦ୍ଧ ହେଉଥାଏ ବାରବାର
କିଏ କେଉଁ ଶବଦର ଆକର୍ଷଣରେ
ଲହଡି ଭିତରେ ହିଣ୍‌ହିଣ୍‌ଉଥାଏ ନିଆଁ
କ୍ଷୁଧାର
ନାରୀଟିଏ ପାଲଟୁଥାଏ ହୁତାଶନ
ସ୍ୱପ୍ନର
କ୍ରମଶଃ ନଦୀର ଧାରଦେଇ
ହସିଉଠୁଥାଏ ସୁନେଲି ଫସଲ
ପାପର ଫରୁଆ ଭିତରୁ
ଖେଳିଯାଉଥାଏ ପଦ୍ମଗନ୍ଧ
ପାହାଡର ନା ସମୁଦ୍ରର
ନିଆଁଶ୍ରୀ ବର୍ଷାର
ନା ଉଦୁଉଦିଆ ବୈଶାଖର ।

କିଏ
ଏମିତି ଲୁଚିଥାଏ କୁହୁଡ଼ିରେ
ମେଘ ମେଘ ଆକାଶର ପାର୍ବଣରେ
ଜହ୍ନରାତିର ଲୋଡ଼ିବାପଣରେ
ମହେଞ୍ଜୋଦାର ମାଟି ତଳୁ
ଖଣ୍ଡଗିରି ଶିଳାଲେଖରୁ
ଧଉଳୀର ସ୍ମୃତି ଭିତରେ
ଉକୁଟି ଉଠୁଥାଏ କାନ୍ଦ କାନ୍ଦ ଭାବଟିଏ
ମଶାଲ ଭଳି ଦାଉଦାଉ ଜଳୁଥାଏ
ସ୍ରୋତ ଭିତରେ
ଧାନକ୍ଷେତର ନିଆଁ
ମଶାଣି ଭିତରୁ ତୁଳସୀଟିଏ
ଜୀବନର ଛତ୍ର ଧରି
ଅପମାନର ତୀରରେ ମୁଣ୍ଡ ପୋତି
ବସିଥାଏ ତରୁଣୀଟିଏ
ନା ଆତ୍ମହତ୍ୟା
ନା ଆତ୍ମରକ୍ଷା
ଗୋଟିଏ ବି ବାଟ ନ ଥାଏ ସାମ୍ନାରେ
ନିଆଁ ହୋଇ ଜଳୁଥାଏ ଦିହ
କାମନା ପକ୍ଷୀ ବସା ନିର୍ମାଣୁଥାଏ
ଭବିଷ୍ୟତ ପାଇଁ
କ୍ରମଶଃ ନିଆଁ ଚରୁଥାଏ
ନାରୀ ଦିହରେ ।

ଦିନେ ସନ୍ନ୍ୟାସୀଟିଏ ଉଭାହେଲେ
ନଈକୂଳରେ
ସତ୍ୟ ପକ୍ଷୀ କୁହାଟୁଥାଏ
ରାସ୍ତା କାହିଁ ରାସ୍ତା କାହିଁ
ଗଳଦ୍‌ଘର୍ମ ସମ୍ପର୍କର ଦ୍ୱାହି ଦେଇ
ସନ୍ନ୍ୟାସୀ ଚାହିଁଲେ
ସମ୍ମୁଖରେ ତରଳିଯାଉଥାଏ ଋତୁ
ଶସ୍ୟ ଶ୍ୟାମଳା ମାଟି ଗନ୍ଧରେ
ହଜିଯାଉଥାଏ ସମୟ
ଆନମନା ପ୍ରକୃତିରୁ ଉଠୁଥାଏ
ମିଳନର ସଂଗୀତ
ସନ୍ନ୍ୟାସୀ କହିଲେ ବାଃ...
ଏତେ ଷଡଯନ୍ତ୍ର
ଏତେ ବିଦ୍ରୋହ
ଏତେ କୁଚକ୍ର
ଭିତରେ ଭିତରେ ଶୋଷିନେଲେ ନାଡି
ଦୃଷ୍ଟି ନିବଦ୍ଧ କଲେ
ତୃତୀୟ ନେତ୍ରରେ
ଶବ ନା ଶିବ
ଦେହ ନା ବିଦେହ
ବାଗର୍ଥର ବ୍ୟବଧାନ ଭିତରେ
ଚିହ୍ନାଇଦେଲେ ସବୁ ଏକ ଆସ୍ତରଣ
ଆରପଟେ ଏକ ସୁନ୍ଦର ଶରୀର
ନାରୀର ନୈରାତ୍ମାର

ସନ୍ନ୍ୟାସୀ ସମ୍ଭୋଗ ତତ୍ପର
ନିଆଁରେ ନିଆଁରେ ଅପୂର୍ବ ଶିତ୍କାର ।

କ୍ରମଶଃ ନିଆଁ ଭିତରୁ ଫିଟିପଡିଲା
ନଦୀଟିଏ, ଡେଇଁଲା କଅଁଳା ଛୁଆପରି
ଛନଛନ ଘାସର ସ୍ୱପ୍ନରେ
ଭ୍ରୁଣକୁ ଗର୍ଭରୁ ବିଦାରି
ସ୍ଥାପିଲା ପର୍ବତ ଉପରେ
ସମୟ ଫାଟି ଦି' ଫାଳ ଝୁରୁଥାଏ
କିଏ  କିଏ
ନାରୀ ନା ନଦୀ
ସମ୍ଭୋଗରତ ସନ୍ନ୍ୟାସୀ
ଉର୍ଦ୍ଧ୍ୱରେତା
ଯମୁନା ପାଣିରେ ଉଛୁଳା ରମଣ
ବୀପରୀତ ରତିପରି ଝରଣାର
କିଙ୍କିଣି ଶବ୍ଦ ।

ବିଭୋର ପକ୍ଷୀ, ବିଭୋର ଆକାଶ
ଶବ୍ଦକୁ ଭେଦି ସିର୍‌ସିରେଇଯାଏ
ସରୀସୃପ
ଦିହ ଭିତରେ ଭୋଗର ଦୋହା
କିଏ ବୁଣେ ଶେଷହୀନ
ପ୍ରେମର ବିହନ ।

ମହମହ ପଦ୍ମଗନ୍ଧ ସାରା ଅଗଣା
ଗହଗହ ସୂକ୍ଷ୍ମନାଦ ସାରା ଆକାଶ
ବିମ୍ବ ଭିତରେ ଶବଦର କାୟାକଳ୍ପ
ଅଜସ୍ର ଯୁଗର
ନାରୀ ଦିହରେ ନିଆଁ
ସନ୍ନ୍ୟାସୀ କାମନା ବିଭୋର ।



# ବିନ୍ଦୁରେ ବିନ୍ଦୁରେ କବିତାର ବିସ୍ତାର

ନାରୀ ଦିହରେ ନିଆଁ କହିଲେ
ମନେ ପଡନ୍ତି ସୀତା
ପୁରୁଷମାନେ ରାମ ପାଲଟିବାକୁ
କରାଯାଏ ଅଗ୍ନି ପରୀକ୍ଷା
ମୁରୁକି ହସି ନାରୀଟିଏ ନିଆଁରେ
ବିହରେ ।

ଯା ଦେହରେ ହୁତାଶନ
ସେହି ଜାଣେ ପ୍ରେମ ଓ ପ୍ରଣୟ
ଜ୍ୱଳନ ଓ ଜାଳିବାର ଅନୁଭବ ।

ନାରୀ ଯେଉଁଠି ନିଆଁରେ ପଶେ
ସେଇଠି ଘନେଇ ଆସେ ମାଟିକୁ ବିପଦ
ମାଟି ଫାଟି ଦି' ଫାଳ ହୁଏ
ମାଟି ଭିତରେ ଥିବା ବିହନ ବନ୍ଧ୍ୟା ହୁଏ
ସବୁଜ ବେହରଣକୁ ଖୋଲି
ମାଟି ଲଙ୍ଗଳା ହୁଏ ତ
ଲୋକେ କହନ୍ତି ପ୍ରଳୟ ହେଲା
କାଳ ଆସିଲା ।

କାଳ କହିଲେ ନାରୀ ହୁତ୍‌ହୁତ୍ ହୋଇଜଳେ
ଓ ଜଳାଏ
ନିଜ ସଂସାରକୁ ଉଚ୍ଛନ୍ନ କରେ
ଶବ୍ଦ କାହିଁ ଯେ ଏମିତି ଚିତ୍ରକୁ ବର୍ଣ୍ଣିବ
ସଂସାର ଭାଙ୍ଗିଲାବେଳେ
ନା ଥାଏ ଧ୍ୱନି
ନା ଥାଏ ଶବ୍ଦ
ବିମ୍ବରେ ବିମ୍ବରେ କବିତାର ବିସ୍ତାର ।



# ପଣତ ଭିତରେ ନିଆଁ

ବେଳେ ବେଳେ ପୁରୁଷ ଦିହରେ ଲାଗେ ନିଆଁ
ନାରୀ ସବୁ ସାବିତ୍ରୀ ପାଲଟନ୍ତି
ନିଆଁକୁ ଧରି ଚାଲନ୍ତି
ଅନନ୍ତ କାଳଯାଏ ।

ନାରୀ ପାଲଟେ ବିକ୍ରମାର୍କ
ଏକା ଏକା ଚାଲେ ଶବ କାନ୍ଧେଇ
ବେଳେ ବେଳେ ଶବ ପାଲଟିଯାଏ ଶିବ;
ସ୍ତବ୍ଧ ହୁଅନ୍ତି ମହାକାଳ
ମଇଁଷି ପିଠିରେ ଫେରିବାକୁ ବାଧ୍ୟ ହୁଅନ୍ତି ଯମ ।

ପ୍ରାଗ୍ ଐତିହାସିକ ଫସିଲ୍‌ରୁ ଜଣାପଡେ
ବିବର୍ତ୍ତନର ଇତିହାସ
ନାରୀ ହିଁ ଲଗାଏ ପୁରୁଷ ଦିହରେ ନିଆଁ ।
ପୁଣି ନାରୀ ହିଁ ଲିଭାଏ ପୁରୁଷ ଦିହର ନିଆଁ
ଏବଂ ତମ୍ବାପରି ଚକ୍‌ଚକ କରେ ଜୀବନ
ବିମ୍ବ ଭିତରେ ସାଇତା ବିମ୍ବ
ଉପ୍ତବୀଜ ହୁଏ
ନିଆଁ ଭିତରୁ ଉକୁଟି ଉଠେ
ସଭ୍ୟତାର ନାନ୍ଦୀ
ଜଳନ୍ତା ଅଙ୍କୁରୋଦ୍‌ଗମ ।

ବୀଜ ବିକ୍ଷେପ ସରିଥାଏ ନିଆଁରେ
ନିଆଁରୁ ଜନ୍ମନିଏ ଇତିହାସ
ମିଥୁନ ଲଗ୍ନରେ
ଦୃଶ୍ୟମାନ ଆତ୍ମା ଓ ଅଦୃଶ୍ୟମାନ
ଆତ୍ମା ଭିତରେ
ଲହଡି ଭାଙ୍ଗେ ନାରୀ
ପାହାଡ କନ୍ଦିରେ ଧାଙ୍ଗଡୀଟିଏ
ପ୍ରେମର ଧ୍ୱନି ତୋଳେ
ଫେରାଇ ଆଣେ ପୁରୁଷକୁ
ଶବ ଆଖିରେ ଚମକି ଉଠେ ସ୍ୱପ୍ନ ।



# ମଶାଣିର ଫୁଲ

ନାରୀ
ଏଥର କବିତା ପୃଷ୍ଠାରେ;
କାଳିଶୀ ଲାଗିଲା ପରି ଉଦଣ୍ଡ
 ମହୁମୁହାଣ
ଆଖିର ଚାହାଁଣିରେ
ଜାଳିଦେବାର ଆତଙ୍କ
ଦୁମ୍‌ଦୁମ୍ ପାଦ ପ୍ରହାର
ଢେଙ୍କିର ପାହାନ୍ତି ସୁର
ଭାଙ୍ଗୁଥାଏ ଗାଁ ସାରା ନିଦ
ଗୁଣିଆ ଗଳଦ୍‌ଘର୍ମ ଉଦ୍ୟମରେ
କିଶୋରୀ ବଖାଣୁଥାଏ ଶହେବର୍ଷ ତଳର
କାହାଣୀ କବିତା ରୂପରେ ।

କେବେ ଆସିଥିଲା ବ୍ରାହ୍ମଣୀରେ ବନ୍ୟା
ମୀନ ଖେଳିଥିଲେ ଘର ଅଗଣାରେ
ହାତୀ ଧରାକୁ ଯାଇଥିବା ସିପେହୀ
ରାତି ଅଧରେ କେମିତି
ଉଠେଇ ନେଲା ରାଧୀକୁ ନିଦରୁ
ସ୍ୱପ୍ନ କୁଢେଇ
ସାହୁକାର ଘର ବୋହୂ ଡେଇଁ ପଡିଥିଲା
ପୋଲ ତଳୁ ବଢ଼ି ପାଣିକୁ

ଉଦ୍ଧାର କର ଉଦ୍ଧାର କର
ଡାକିଲାବେଳକୁ ଗାଁ ଲୋକ
ଶବ ଲାଗିଥିଲା ଆରଗାଁରେ
ମୁଁ ଥିଲି ତାର ସାକ୍ଷୀ

କିଶୋରୀ ଚିତ୍କାର କରୁଥିଲା
ଗୁଣିଆ ଚୁଟିଝିଙ୍କି, ଝୁଣା ଜଳାଇ
ଫୁଙ୍କି ଚାଲିଥିଲା ବିଡ୍‌ବିଡ୍ ମନ୍ତ୍ର
କିଶୋରୀ କହୁଥିଲା
ତୁ ପରା ତୋ ଭାଉଜକୁ
କରିଥିଲୁ ହରଣ
ଗୁଣିଆ ହୋଇ କି ମନ୍ତ୍ର ପଢୁଛୁ
ତୋ ଝିଅ ପିଶାଚୁଣି କବଳରେ ମଲା ବେଳେ
ତୁ କଣ କଲୁ ?

ଗୁଣିଆ ବଲବଲ ଚାହିଁଲାବେଳେ
କିଶୋରୀ ପାଲଟିଲା ହୁତାଶନ
ସବୁଜାଳି କହିଥିଲା
ଆସନା ଆସନା ସମସ୍ତେ ପୋଡିଜଳି
ମରିବ ;
ମୁଁ ପ୍ରେମରେ ପଡିଛି ମଶାଣିର
ମୁଁ ପ୍ରେମରେ ପଡିଛି ଡଙ୍ଗର ତଳ ଧାଙ୍ଗଡାର
ମୁଁ ପ୍ରେମରେ ପଡିଛି ବ୍ରାହ୍ମଣୀ ପାଣିର
ମୁଁ ପ୍ରେମରେ ପଡିଛି ପାଙ୍ଗୁଲି ପାହାଡର

ମୋତେ କୋକେଇ ଦିଅ
ସରୁ ଚୁମା ଦିଅ
ଜଳ ତରଙ୍ଗ ଦିଅ
ନିଥର ପଥରର ସ୍ପର୍ଶ ଦିଅ
ନହେଲେ ଜାଳିବି ଜାଳିବି ଜାଳିବି
ତ୍ରିବାର ସତ୍ୟ ।

ମୁଁ ପ୍ରେମରେ ପଡ଼ିଛି
ମୋତେ ଗପରେ ଖୋଜନା
ମୁଁ କବିତାରେ ଅଛି
ନିଆଁ ପରି ଜଳୁଛି ।

କିଏ ଜଣେ ଦାର୍ଶନିକ କହିଥିଲେ
ନିଆଁରେ ଜଳିଲେ ଶବଦ
କବିତା ହୁଏ
ଦୁନିଆ ନିଆଁରେ ଜଳିଲେ
ନାରୀ ହୁଏ ମନ୍ଦାକିନୀ ।

କିଶୋରୀ ନାରୀ ପାଲଟିଲା
ଗୌଣ୍ଡିଆ ବୁଢ଼ାକୁ ବିବାହକରି
ପାଞ୍ଚ ପୁଅ ଜନ୍ମ କଲା ।
ଅଶିବର୍ଷର ଗେରସ୍ତ ସହିତ
ଯୁବତୀ ସ୍ତ୍ରୀ

ଗାଁ ଦାଣ୍ଡ ଚମକିଲା
ନାତିଙ୍କ ଭିଡ ଜମିଲା
କିଶୋରୀ ନିର୍ବିକାର ।

ନିଆଁରେ ଜଳିଛି ବୋଲି ସେ
ପାଞ୍ଚ ପୁଅର ଜନନୀ
ଗାଁ ଲୋକେ କୁହନ୍ତି
ଗୌନ୍ତିଆ ବୁଢ଼ା ଅପାରଗ ଅଣପୁରୁଷ।
ତାର ପ୍ରଥମ ସ୍ତ୍ରୀ ବିବାହର ବର୍ଷେ ପରେ
ଆତ୍ମହତ୍ୟା କଲା
ଦ୍ୱିତୀୟ ବିବାହର ପାଞ୍ଚ ବର୍ଷ ପରେ
କୋଠିଆ ସହ ଚାଲିଗଲା
ତୃତୀୟ ମା ହୋଇନପାରି
ବନ୍ଧ୍ୟା ଦୋଷକୁ ମୁଣ୍ଡପାତି ସହିନେଲା
ଚତୁର୍ଥ ସ୍ତ୍ରୀ କିଶୋରୀ
କି କିମିଆ କଲା
ଗୌନ୍ତିଆ ବୁଢ଼ା ବୟସରେ ବାପ ହେଲା
କିଶୋରୀ ବି ଗାଁ ଦାଣ୍ଡ ପୁରାଇ
ଗର୍ବରେ ଚାଲିଲା;

ଗାଁ ମାଇକିନା ଫୁସ୍ ଫାସ୍ ହେଲେ
ପୋଖରୀ ତୁଠ ସରଗରମ ହେଲା
କପିଳା, ଗୌନ୍ତିଆର ନାତି
କିଶୋରୀର ଭଲ ମନ୍ଦ ବୁଝୁଥିଲା ।

ବୁଢ଼ାବର ଦେଖି
କିଶୋରୀ ଅଭିମାନରେ କୁହୁଳୁଥିଲାବେଳେ
କପିଳା ନିଆଁ ଜଳାଇ ଦେଲା
ନିଜେ ଜଳିଲା
କିଶୋରୀକୁ ବି ।

ନିଆଁ ଖେଳରେ ସଂସାର ହସିଲା
ଗୌନ୍ତିଆର ପୂର୍ବ ପୁରୁଷର
ଅଭିଶପ୍ତ ବଂଶଧରଙ୍କୁ କିଶୋରୀ
ମନ୍ଦାକିନୀ ପାଲଟି ଉଦ୍ଧାର କଲା ।

ନିଆଁରେ ଜଳିଲା ବୋଲି
ସାଧାରଣ ନାରୀଟିଏ ମନ୍ଦାକିନୀ ହେଲା
କୋହର ପେଡିରେ ସାଇତା
ନିଆଁରେ ଖେଳିବା
କେତେ ରୋମାଞ୍ଚକର ଜାଣିଲା ।

ନିଜେ ଜଳିଲା
ଅନ୍ୟକୁ ଜଳାଇଲା ।
ହୁତ୍‌ହୁତ୍ ହୋଇ ଜଳିଲା
ଇତିହାସ, ଭାଗବତ
କୋରାନ ଓ ଗୀତା ।
କିଏ କହିଲା ନାରୀ ରୂପୀ
କବିତା

କିଏ କହିଲା
କବିତା ବନିତା ଲତା
ନିଆଁର ଆଶ୍ରିତା ।

ମଶାଣୀର ଫୁଲ ପରି
ନାରୀଟିଏ
ପବିତ୍ର ଶୁଦ୍ଧପୂତ
ଅଗ୍ନିସ୍ନାତ ।



# ଯା ଆକାଶ ହୋଇଯା

ନିଆଁ ଜଳିଲା ପାହାଡରେ
ଜିଲିଙ୍ଗି ଦିହରେ
ଧାଙ୍ଗଡା ଖୋଜି ଖୋଜି
ତରକା ହରିଣୀ ପରି ଏ ପାହାଡରୁ
ସେ ପାହାଡ
ଏ ଜଙ୍ଗଲରୁ ଆର ଜଙ୍ଗଲ
ଚାଲିଲା
କିଏ କହିଲା ତୋ ଦିହରେ ନିଆଁ
ଆ ପାଣି ଦେବି
କିଏ କହିଲା ମଲମ ଦେବି
କିଏ କହିଲା ତାଳପତ୍ରରେ ଝାଡିଦେବି
କିଏ କହିଲା ଆ ମୋ ଦିହରେ ଘୋଡାଇ ଦେବି ।

ଧାଙ୍ଗଡାଟିଏ ନିଆଁ ପରି ଆସିଲା
ନିଜେ ଜଳି ଜଳି ଅଧିକ ହେଲା
ତା ଜ୍ୱଳନରେ
ଜିଲିଙ୍ଗିର ନିଆଁ ଶୀତଳ ଲାଗିଲା
ଦୁଇ ନିଆଁରେ ହସିଲେ ପାହାଡ
ଉପତ୍ୟକା, ଝରଣା ଓ ଜଙ୍ଗଲ
ଜଳି ଜଳି ଗାଢ଼ଲାଲ ହେଉଥିଲା
ନିଆଁର ଅଭିସାର ।

ଜିଲିଙ୍ଗି ନିଆଁ ଖେଳରେ ମାତିଲାବେଳେ
ତା' ମର୍ଦ୍ଦ ଖୁସିହୁଏ
ନିଜେ ନିଆଁ ପାଲଟେ ।

ସହରୀ ବାବୁ ଦିନେ ହଠାତ୍
ନିଆଁ ଲଗାଇବାକୁ ଜୋର କଲା
ଜିଲିଙ୍ଗି ଚିତ୍କାର କଲା
ଡେଇଁଲା ତରକା ହରିଣୀପରି
ମର୍ଦ୍ଦ ରାଗି ଲାଲ ହେଲା
ଦି' ଗଡ କରି ଦେଲା ବାବୁକୁ
କଟା ମୁଣ୍ଡ ଧରି
ଥାନାବାବୁକୁ ଭେଟି ଦେଲା
ନେ' ଏ ଜାନୁଆରକୁ
ଜଙ୍ଗଲରେ ସ୍ଥାନ ନାହିଁ
ନେ' ଏ ହାରାମଜାଦାକୁ
ନାରୀ ଦିହରେ ନିଆଁ ଲଗାଇ
ଆସିଥିଲା ଇଜ୍ଜତ ନେବାକୁ
ଥାନାବାବୁ ଥ' ହୋଇଗଲା
ଜଙ୍ଗଲକୁ ଦେଖିଲା
ଝର୍ଣ୍ଣାକୁ ଦେଖିଲା
ପାହାଡକୁ ଦେଖିଲା
କହିଲା ତୁ କିଛି ଦୋଷ କରିନୁ
ଯା' ପବନ ହେଇଯା
ଯା' ମେଘ ହେଇଯା
ଯା' ଆକାଶ ହେଇଯା

ଥାନାବାବୁ ରିପୋର୍ଟ
ଲେଖିଲା ଜଙ୍ଗଲରେ
ବାଘ ମାତିଲେ
ସହରୀବାବୁମାନଙ୍କୁ
ବାଛି ବାଛି ଶିକାର କରେ ।

ଜିଲିଙ୍ଗିର ମର୍ଦ୍ଦ
ଅଦୃଶ୍ୟ ହୋଇଗଲା
ଜିଲିଙ୍ଗି ଦିହର ନିଆଁ
ସେମିତି ଜଳୁଥିଲା
ହୁତୁହୁତୁ
ରାତି ଦିନ
ଦିନ ରାତି
ଜଙ୍ଗଲ ସାରା
ପାହାଡ ସାରା ।



# ନିଆଁ

ନାରୀ ଦିହର ନିଆଁ
ଜଙ୍ଗଲର ନିଆଁ ସମାନ;
ମୁହୂର୍ତ୍ତକରେ ଚରିଯାଏ ଚଉଦିଗ
ନିଜେ ଜଳେ ଦେଖଣାହାରୀକୁ ଜଳାଏ
ସାମ୍ନାସାମ୍ନି ହେଲେ
ପାଉଁଶ କରିଦିଏ ପ୍ରେମ ପ୍ରଣୟ ଓ
ଜୀବନ ଜଞ୍ଜାଳକୁ ।

ନିଆଁରେ ଆହୂତି ଦେବା ଦର୍କାର
ନାହିଁ
ଦର୍କାର କାମନା
କର୍ମଫଳର ବିଡମ୍ବନା
ଛାତିତଳେ ସଂଚରିଯାଏ ଏ ନିଆଁ
ପ୍ରଶ୍ନ ଓ ଉତ୍ତରକୁ ଗ୍ରାସେ

ଉତ୍ତରା ଓ ଦ୍ରୌପଦୀ ଜଳନ୍ତି
ଏକ ଜୁଇରେ
ସୀତା ଓ ସୂର୍ପଣଖା ପରଖାଯାନ୍ତି
ଏକ ନିଆଁରେ

ଜଣେ ଜାଳୁଥାଏ ପୁରୁଷକୁ
ଜଣେ ଜଳୁଥାଏ ପୁରୁଷ ପାଇଁ

ନିଆଁ
ସବୁ ପ୍ରଶ୍ନର ଉତ୍ତର
ସବୁ ପାପର ପ୍ରାୟଶ୍ଚିତ ।



# ନାରୀ ମାତିଲେ

ନିଆଁ ପାଇଁ
ଦିହ ପାଇଁ ସଉଦା କରେ ନାରୀ ।

କଞ୍ଚନା କହଁର
ନିଆଁରେ ସଅଁପିଦେଲା ଦିହ
ଫାନ୍‌ସିପୁଞ୍ଜି ବିକିଲା ପୁଅ ।

ଦହ ଦହ ଖରାରେ ନିଆଁ ଲାଗିଲା
ପାହାଡରେ
ନେଉଳ ମୂଷା ବିକଳ ହୋଇ
ଚଢ଼ିଲା ଗଛରେ
ମୟୂର ଅଣ୍ଡା, ସାପ ଶାବକ
ଟେଣ୍ଟେଇ ବସା, ହରୀଣର ନାଚ
ପୋଡିଗଲା ନିଆଁରେ

ଲୋକେ ଖୁସି ହେଲେ
ପଦା ହେଲା ଜଙ୍ଗଲ
ବଢ଼ାଇହେବ ଘର ଓ କାର୍ଖାନା
ଚାକିରି ପାଇବେ ବେକାର
ସବୁ ଜନ୍ତୁ ବେଘର ପଛେ ହୁଅନ୍ତୁ

ପରବାଓ୍ୱ ନାହିଁ ମଣିଷର
ନିଆଁ ପାଇଁ ସବୁ ହୋଇପାରେ
ସମ୍ଭବ
ଖାଣ୍ଡବ ହେଉବା ଶିମିଳିପାଳ ।
ନିଆଁ ମାତିଲେ
ଉଜୁଡି ଯାଏ ସଂସାର
ନାରୀ ମାତିଲେ
ଉଜୁଡେ କାଳ ପରକାଳ ।



# ପରଂପରାର ପରାଭବ

ପରଂପରାରୁ ଉକୁଟି ଉଠେ ବଞ୍ଚିବାର
ନୂଆ ଏକ ସ୍ୱପ୍ନ
ଶୋଷ ମେଣ୍ଟେଇବାକୁ
ପାଣି ନା ସୋମରସ
ଲକ୍ଷହୀରା ପାଇଁ
ରାତି କଟାଇବାକୁ
ସମସ୍ତେ ପ୍ରସ୍ତୁତ ।

ଚାଙ୍ଗୁ ବାଜିଲେ
ଉଚ୍ଛନ୍ନ ହୁଏ ଭୂୟାଁ କିଶୋରୀ
ମନ ଦେବାକୁ
ହରିଣୀ ପରି ଛନ ଛନ
ତରକା
ଜଳୁଥାଏ ନିଜ ଭିତରେ
ଜଳୁଥାଏ ଜଙ୍ଗଲ
ଲକ୍ଷେ ସ୍ୱର୍ଣ୍ଣ ମୁଦ୍ରାରେ
ବିକା ସରିଥାଏ ଯୌବନ
ଏଠି କୟାଁ ମଞ୍ଜି ଓ ଆମ୍ବ ଟାକୁଆରେ
ବିଦ୍ରୋହ
କାଇମାଟିରେ ମୁହଁ

ମଜା ସରିଥାଏ
ନୂଆବୋହୂର ।

କିଏ କହୁଥିଲା
ଜଙ୍ଗଲ ଭିତରେ ଥାଏ
ପ୍ରେମର ଗୁହା
ଗୁହାରେ ରମଣର ମନ୍ତ୍ର
ମନ୍ତ୍ରରେ ମନ୍ତ୍ରରେ
ଜୀବନ ନାଟିକା
ଖରହୁଏ
ସୃଷ୍ଟି ହୁଏ ସୂକ୍ଷ୍ମ ବଂଶଧର
କୁହାଟୁଥାଏ ପରଂପରାର
ପରାବୃତ୍ତ
ଶିଳାରେ ଶିଳାରେ
ଡାଳରେ ଡାଳରେ
ମାଟିରେ ମାଟିରେ
ମଞ୍ଜି ଥରା କାକୁସ୍ଥ ପ୍ରାଣରେ
ଲେଖା ସରିଥାଏ ପ୍ରାରବ୍ଧ
କିଶୋରୀର ମନ ତଳୁ
ଉଠୁଥାଏ ସ୍ୱପ୍ନର
କାଠହଣା
କଣା କରୁଥାଏ ସମୟର ମଞ୍ଜିକୁ
ପରଂପରାର ପରାଭବକୁ ।

❖❖❖

# ସୃଷ୍ଟିର ରହସ୍ୟ

କାହାକୁ ପଚାରୁଛ ଜୀବ ସୃଷ୍ଟିର
ଇତିହାସ
ନାରୀ ଉପୁଜାଏ ଶସ୍ୟ
ସ୍ୱପ୍ନ ବୁଣି
ସ୍ମୃତିର ସିଆର କାଟି
ସମ୍ବେଦନାର ପାଣି ମଡାଏ
ଅକ୍ଷୟ ବୀଜରୁ ଉପୁଜାଏ
ସୃଷ୍ଟିର ରହସ୍ୟ

ସୃଷ୍ଟିର ରହସ୍ୟ କଣ ?
ନିଆଁ ପରି ଜଳୁଥିବା
ମାଟିର ବାସ୍ନା
ନା ଅହଂକାରୀ ପବନର ପଣତରେ
ଆଶ୍ରା ଲୋଡୁଥିବା ପ୍ରତ୍ୟୟ
ନା ପରାଗ ଭିତରେ ଗୁଣ୍‌ଗୁଣଉଥିବା
ତପସ୍ୟାର ଜୀବନ ।

ଚିରକାଳ ପଣତ ପ୍ରସାରି
ହୃଦୟ ପ୍ରସାରି
ମମତା ପ୍ରସାରି
ପାଇଛ ଯେଉଁ ଗୁପ୍ତଧନ

ତାକୁ ବିକ୍ଷିପ୍ତ କର
ବହୁଧା ବିଭକ୍ତ କର
ଦ୍ରୌପଦୀ କର
ଅସନ୍ତୁଷ୍ଟ ପୁରୁଷର ଲେଲିହାନ
ଆତ୍ମବଡିମାର ଅଗ୍ନିକୁ
ନିର୍ବାପିତ କରିବା ପାଇଁ
ତୟାର ନାରୀ
ସେ ଯାଜ୍ଞସେନୀ
ଅକ୍ଷୟତେଜ ଓ
ପ୍ରକାଶର ସିଂହବାହିନୀ ।

ବର୍ଷା ରାତିରେ
ଚଡକ ସାଥିରେ
ନାହିଁନଥିବା ଦୁର୍ବିପାକର
ବତାସ ଭିତରେ
ନା ଥିଲା ଉଦାସୀ ସ୍ୱପ୍ନ
ନା ଥିଲା ପିଲାବେଳର
ଉଦ୍ଦାମ ଅହଂକାର
ମଧୁର ସଞ୍ଚାର
ଶୀତ୍କାର
ଖେଳୁଥିଲା ଅଗଣାସାରା
ନିଆଁ ଲିଭିସାରିଥିଲା
ହୃଦୟରୁ
ନାରୀ ଆସୁଥିଲା ରୋମାଞ୍ଚିତ

କରି ଫୁଲବନ
ଅସଜଡା ପ୍ରୀତିମୁଗ୍ଧ
ଉଦାସୀ ପବନ ।



# ସୃଷ୍ଟିର ଶୂନ୍ୟ ପୃଷ୍ଠା

ବୀଟ ପୁରୁଷର ଦ୍ୱାହି ଦେଇ
ବାରାଙ୍ଗନା କେହି
ଅର୍ଗଳି ଡେଇଁଲେ
ପ୍ରଜାପତିର ରଙ୍ଗ ଖେଳିଯାଏ
ଅଗଣା ସାରା

ଲମ୍ପଟ ପୁରୁଷଠାରୁ
ବାରାଙ୍ଗନା ଶ୍ରେୟସ୍କର
ସମାଜ ନିର୍ମାଣରେ

ଅନନ୍ତ ପ୍ରଶ୍ନବାଚୀକୁ
ଶବ୍ଦ ମୁଖର କରିବା ପାଇଁ
ସବୁକାଳରେ ନାରୀ ବଳୀ ପଡିବା
କଣ ନିହାତି ଦର୍କାର ?

ଅଣ୍ଟିରେ ନିଆଁ ଧରି ଚାଲିବା ଯଦି
ଅବଧାରିତ
ତେବେ ଉତ୍ତର ପୁରୁଷ ପାଇଁ
କି ବିକଳ୍ପ ରହିବ
କିଏ ଦେବ ମାର୍ଗଦର୍ଶନ
ନାରୀ ସତ୍ତାକୁ ଅବିଚ୍ଛିନ୍ନ କରି

ସୃଜନର ମାଙ୍ଗଳିକ ଗାଇଲାବେଳେ
ରାଗ ତୋଡି ନା ରାଗ ବେହାଗ ?

ମାଲକୋଷ ପରି ନାରୀ
ତନ୍ଦ୍ରା ତନ୍ଦ୍ରା ମେଘ ମେଘ
ଭାବନାର ଭାବ ଭଉଁରୀ

ସୃଷ୍ଟି, ନାରୀର ଧର୍ମ
ମୂଳ କିଏ ଜାଣିବା ଦର୍କାର ନଥାଏ
ଆଧାରଭୁତ ହେବା ପ୍ରତିଟି
ବୀଜର ଭବିତବ୍ୟ
ତାପରେ ଆକାଶକ୍ଷେପା

ସମୁଦ୍ର ପହଁରା
ଉଚିତ ଅନୁଚିତର ଢ଼େଉ ସେପାରେ
ନାରୀ
କେନ୍ଦ୍ର ଓ ପରିଧି ଉଭୟରେ
ନାରୀ
ପ୍ରତିଟି ଆୟାମ ପ୍ରତିଟି ତଳରେ
ନାରୀ
ନିର୍ଦ୍ଦିଷ୍ଟ ସ୍ୱର ଅନିର୍ଦ୍ଦିଷ୍ଟ ଲୟରେ
ନାରୀ
ଦୀର୍ଘ ସାଧନାର ସୃଜନ କଳାରେ
ନାରୀ

ନାରୀକୁ ଅତିକ୍ରମୀ ପାରେନା
କୌଣସି ପୁରୁଷ
ସମାହିତ ହୋଇଯାଏ
ସନ୍ଧି ଭିତରେ ଏକାକାର
ନିଆଁ ନାରୀ ନିରାଜନା
ବୀଟ ପୁରୁଷ ହେଉ ବା
ଅଭିସାରିକା
ପାରସ୍ପରିକ ସଙ୍ଗୀତାୟନରେ
ସିନ୍ଦୂରିତ ସୃଷ୍ଟିର
ଶୂନ୍ୟ ପୃଷ୍ଠା ।



# ସ୍ମୃତିର ଫରୁଆ ଖୋଲିବା

ନାରୀ ଦେହରେ ନିଆଁ
ପୁରୁଷ ଦେହରେ ନିଆଁ
ନିଆଁ ଭିତରେ
ଜଳିଯାଏ ଅଳୀକତା
ଶୁଦ୍ଧ ସୁବର୍ଣ୍ଣ ପରି
ଝଟକୁଥାଏ
କବିତା ।

ନିଆଁକୁ ଗର୍ଭସ୍ଥ କରି
ଦୀପଟିଏ ଜଳୁଥାଏ
ଭବିତବ୍ୟର
ସେଇଥିପାଇଁ ଯେତେ
କଳାକୌଶଳ ଜୀବନ ଜୀଇଁବାର
ଅତୀତକୁ ଜାଳିପୋଡି
ନୂଆ ନିର୍ମାଣର
ନିଆଁ ଲାଗିଲେ କିଛି ଜଳେନା
ବରଂ ଝଟକେ ଜୀବନ
ନାରୀ ଜଳିଲେ ବିକଶି ଉଠେ
ସମୟ ।

ଯେମିତି କିଏ ଅନନ୍ତର
ଦୀପଟିଏ ଜାଳିଦେଇଛି
ନୂଆ ଏକ ରାସ୍ତା ତିଆରିଛି
ସଭିଏଁ ଯିବା ପାଇଁ
ରାସ୍ତା ଏପଟେ ନିଆଁ
ସେପଟେ ନିଆଁ
ରାସ୍ତାର ଅଜବ କିମିଆ ।

ସଭିଏଁ ଯେମିତି ମୋହାଛନ୍ନ
ଯେଉଁଠିକି ଯାଉନା ରାସ୍ତା
ଯିବା ହିଁ ଅବଧାରିତ
ଯିବା ହିଁ ସତ୍ୟ ।
ନାରୀଦିହରେ ନିଆଁ
ରାସ୍ତାର କିମିଆ ।

ଆସ ଯିବା ଜଳିବା
ଦୀପଟିଏ ହେବା
କବିତା ଗଢ଼ିବା ପାଇଁ
ସ୍ମୃତିର ଫରୁଆ
ଖୋଲିବା ।



# ତୁମରି ପ୍ରତୀକ୍ଷା

ତମେ ଚାଲିଗଲାପରେ
କର୍ପୂରମୟ ହୋଇଗଲା ଦାଣ୍ଡଧୂଳି
ଲେପିଲି କପାଳେ
ପରମର ସ୍ମୃତି ଓ ସୌରଭ
ଖେଳିଗଲା ମୋ ସାରା ଦିହରେ ।

କ୍ଷୁଦ୍ର ଏକ ଚଟିଘର
ପଥିକଙ୍କ ପାଇଁ
ରୋଷେଇରେ ବ୍ୟସ୍ତ ମୁହିଁ ସରଦେଇ
ଚିହ୍ନି ମଧ୍ୟ ଚିହ୍ନିପାରେ ନାହିଁ
କିଏ ପ୍ରିୟ କିଏବା ପରମ
ଘରକୋଣେ ଦୀପଟିଏ ଜାଳି
ତମକୁ ସ୍ମରଣ କରେ
ଆଲୋକିତ କର ମୋର
ଅନ୍ଧକାର ସତ୍ତା
ଅମୃତର ଚରମ ସ୍ପର୍ଶରେ
ସଫଳ କର ଅସଫଳ ଯାତ୍ରା ।

ଲୁଚିଯାଉ ସବୁ ପରିଚୟ
ପଦଚିହ୍ନ ଜଳିଯାଉ

ଶୂନ୍ୟ ଅମାର ମୋର ଶୂନ୍ୟ ରହୁ
ସବୁ ତୁଚ୍ଛତା ଭିତରେ
ଜଳୁଥାଉ ଯତୁଗୃହ
ତୁମକୁ ମୁଁ ଅନୁଭବେ
ନୀଳନୀଳ ନୀଳ ଓଢଣୀରେ
ତୁମକୁ ମୁଁ ଚାହୁଁଥାଏ
କଳାକଳା ଭସା ବାଦଲରେ

ତୁମକୁ ପାଇବା ପାଇଁ
ବିଛାଇଛି ବସନ୍ତର ଦାଣ୍ଡ
ତା ଉପରେ ଫଗୁଣର
କୁଟିକମ
ପ୍ରକୃତିର ଟେରାକୋଟା
କିଶୋରୀର ସଲ୍ଲଜଗୁମାନ ।
ଆବେଗରେ ଜଳୁଥିବ
ଲୋହିତ ଆବେଗ
କାମାର୍ତ୍ତ ମଣିଷ ପରି
ଚଳଚଞ୍ଚଳ ପରିପୂର୍ଣ୍ଣ
ଧାନକଟା ବିଲପରି
ଲହୁ ଲୁହାଣ
ମୋର ଜୀବନ
ଲୋଡିବାପଣ

ପ୍ରତିଟି ସୋପାନ ଦେଇ
ତମରି ପ୍ରତୀକ୍ଷା
ବୟସର ଦୋଛକିରେ
ଲୋକାରଣ୍ୟ
ଦେଖିବାକୁ ତୁମରି
ଧରାବତରଣ ।



# କବିତା

କବିତା କ'ଣ
କିଏ କେତେ କଥା କହିଲେ
ତର୍କ ବାଚସ୍ପତି ଅଭିଧାନ ଖୋଲିଲେ
ପଣ୍ଡିତେ ଓଗାଳିଲେ ଶ୍ଳୋକ
କବିତା-
'ସୃଷ୍ଟିର ସ୍ନାୟୁ ଓ ଶବଦର ଆତ୍ମା'

କବି କହିଲେ
ଆ' ଜହ୍ନ କୁ ଯିବା
କବିତା ଏକ ମିଳନ
କୁଶସ୍ଥ ରକ୍ତ ଏବଂ ଯନ୍ତ୍ରସ୍ଥ ଶବ୍ଦ
ରାବଣର ନୃତତ୍ତ୍ୱ
ସାହିତ୍ୟର ସନ୍ଦେଶ ।

ସାଧାରଣ ଲୋକଟିଏ ମୁଣ୍ଡ ଟୁଙ୍ଗାରିଲା
କାଠ ବୋଝକୁ ମୁଣ୍ଡାଇ
ପାଦ ପକାଇଲା ଘରକୁ
ସ୍ତ୍ରୀ ତାହାର ବିକଳ ହେଉଥିଲା
ରୋଗରେ ଭୋକରେ
ଝିଅ ସ୍ୱାମୀ ପରିତ୍ୟକ୍ତା ହୋଇ

ମୂଳ ଲାଗୁଛି ପରଘରେ
ମାଲିକ ଘର ମଦୁଆ ପୁଅ କହୁଛି-
ଆ ଶୁଣାଇବି କବିତା
ପ୍ରେମର କଥା
ସମୟର ନିରବତା ।

ଝିଅଟି ଲୁହ
ଗଡାଇ ଚାହୁଁଛି
ମୃଗୁଣୀ ସ୍ତୁତି ରାଗରେ ଗାଉଛି...
କବିତାର ଜଣାଣ
କବିତାରେ ସବୁବେଳେ
ସମୟ ଭୁଲ୍ କରେ ବ୍ୟାକରଣ
ସମୟ ଭୁଲ କରୁଛି ବ୍ୟାକରଣ ।

❖❖❖

# ଆକାଶ ମାପୁଥାଏ

ମୁଁ ଥାଏ ଗଛରେ
ଆକାଶ ମାପିବା କଥା
ମାପୁଥାଏ ।

ନାଡି ଛିଣ୍ଡାଇ ଭୂଗୋଳ ଲେଖିବା
ଦର୍କାର ପଡେନା
ହାଡର ବଇଁଶୀ ଫୁଙ୍କି
ଯମୁନାକୁ ଆନମନା କରିଜାଣେନା
ମନ ବୃନ୍ଦାବନରୁ ଧାରେ ଆଲୁଅ
ହନ୍ତସନ୍ତ କରେ
ମନ୍ଦାର ଫୁଲର ଡେମ୍ଫ ପରି
ପବନକୁ ଆଲିଙ୍ଗନ କରେ ।

ଯୋଗୀ ପରି ନ ହେଲେ
ଭୋଗୀ ପରି ଚତୁରଙ୍ଗ ଖେଳାଳୀ ପବନ
ଛୁଇଁ ଦିଏ ଧାରେ ବିଜୁଳି
କଜଳର ଗାର
ହଳଦୀ ଅକ୍ଷର
ଦୀର୍ଘଗ୍ରୀବ ପରି ଅନାଇଥାଏ ଗଛକୁ
ଝୁଲୁଥାଏ ବାୟାବସା ଇତିହାସ ପରି

ଟିକିଏ ସ୍ୱପ୍ନ
ଚିରୁଡାଏ ସ୍ମୃତି
କାଣିଚାଏ ଲୋଡିବାପଣରେ
ଲୋଟିପଡେ ମାଟି
ଥାଟପାଟ ନାହିଁ
ଆଉ ଅଳଙ୍କାର ନାହିଁ
ନିରିମାଖୀ ନୁଖୁରା
ଧୂସର ଧୂସର କୋଳ
ଦୂର ସୁଦୂର ସ୍ନେହର
ପଣତ ଉହାଡ଼ ।

ମାଟିରେ ଲୋଟି ପଡିବାକୁ
ହରଦମ ମନ ଉଚ୍ଚାଟ
ଅଥଚ ମୁଁ ଥାଏ ଗଛରେ
ଶୂନ୍ୟଶୂନ୍ୟ ଭାବରେ
ଆକାଶ ମାପୁଥାଏ ।

ବର୍ଷାଧୁଆ ମନ
ବାହାରେ ଭିତରେ ବର୍ଷାଧୁଆ ମନ ଅଗଣା
ସ୍ମୃତି କଦଂବ ଫୁଟିବା
ଆରମ୍ଭ କରିଛି ଜଙ୍ଗଲସାରା ।

କିଛି କିଛି ଶବଦକୁ କବିତା କରିବା
ଆଉ କିଛି ଗୁଡିକରି

ଉଡାଇଦେବା ନୀଳ ଆକାଶରେ
ସେଗୁଡ଼ିକ ଫେରିଆସିବ
ପ୍ରେମର ଦସ୍ତାବିଜହୋଇ
ଶବଦ ଭାରାରେ ତଳିପେଟ ଆକ୍ରାନ୍ତ
ସୃଜନ ପାଇଁ ଯେମିତି ଋତୁ ବସନ୍ତ ।

ଛନ୍ଦରେ ଛନ୍ଦରେ ଓହ୍ଲାଏ ବର୍ଷା
ରାଗରେ ରାଗରେ ନାଚିଯାଏ ମୟୂର
ପ୍ରିୟତମାର ଅଶ୍ରୁରେ ଅଶ୍ରୁରେ ସଂଗୀତର ରାଗିଣୀ
ମାଟିରେ ମାଟିରେ ପ୍ରଣୟର ଅନନ୍ତ ଆବାହନୀ
ଭ୍ରମରେ ଭ୍ରମର ପଡେ
ମାଟି ଛୁଇଁ ଆକାଶର ପଣତ
କାମନା ସଜାଡେ ।

ଦେହମନ ଫଗୁଣର ପରମ ବ୍ୟଞ୍ଜନା
ବର୍ଷାଧୁଆ ଅରମାରେ ସାଇତା ପ୍ରେମର ବାହାନା ।

ଜୀବନର ସଜ ସ୍ମୃତିରେ
ପକ୍ଷୀରଚେ ବିଚିତ୍ର ଉଡାଣ
ଅଦ୍‌ଭୁତ ବର୍ଷାର ଭିଜା
ଲେପିଦିଏ ଶୀତଳ ଚନ୍ଦନ ।



# ପରାୟତ୍ତ

*କବିତ୍ୱ ଆୟତ୍ତ ନୁହେଁ ଏ ମାନ*
*ତେତେବେଳେତ ହେ 'ବୁଡିଥାଇ ନିଜ ଜ୍ଞାନ / -**ରହସ୍ୟ ମଞ୍ଜରୀ***

ମୁଁ ନିଜ ଆୟତ୍ତରେ ନୁହେଁ, ପରାୟତ୍ତ
ଛାଡି ଦେଇଆସିଛି ମନ
ତୁମ ଟୁବି ଗାଡିଆରେ ।
ହଜେଇସାରିଛି ପ୍ରେମ, ଫଗୁଣ
ଖୋଜୁନାଇଁ ବସନ୍ତ
ଗାଁ ଦାଣ୍ଡ ନଈକୂଳ ଜଙ୍ଗଲ ଧାରରେ ।

ଜଳିଯାଇଛି ସମୟ, ଯୌବନ
କୁତୁକୁତୁ ପିଲାବେଳ
ବୋହୂ ବୋହୂକା ନଟୁଚୋରି ଦାଣ୍ଡଖେଳ ।
ଫେରିଆସିଛି ବାସ୍ତବତା, ଜଞ୍ଜାଳ
ନିଘୋଡ କଳି କାଳ
ବ୍ୟସ୍ତତା ଭିତରେ ଇନ୍ଦ୍ରିୟ ସକଳ ।

ହାରିଯାଇଛି ମଣିଷ, ମଣିଷ ଲଢ଼େଇରେ
ଖୋଜାପଡିଛି
ବିବେକ ପ୍ରତ୍ୟୟ ଲୋଡିବାପଣ
ଲିଭିଗଲାଣି ମନଦର୍ପଣରୁ ଭଲପାଇବା

ଦେଖିପାରୁଛି ଅତୀତର ପ୍ରତିମୁହୂର୍ତ୍ତ ମୁହ୍ୟମାନ
ବୟସର ସୁଅ ବହି ଗଲାଣି ସମୁଦ୍ରକୁ
ଜୀବନ ନିକଟେଇ ଗଲାଣି ପରମର
ଲେଉଟାଣି ବାଟରେ ଚକାମାଡିଛି, ଅତୀତ
ଦିଅ ତା'ର ଦେୟ
ବର୍ତ୍ତମାନକୁ ଅତିକ୍ରମିବାକୁ ହେବ ।

ସମୟ ଆସୁଛି ଆସୁଛି କହି, ଅତୀତ
ପାଖରେ ଜୀବନ
ଭୋଗିହେଉନି ସୁଖଶାନ୍ତି ଅମୃତ ।

ଲୁହରେ କହୁଛି କବିତା
ସ୍ମୃତିରେ ବଂଚୁଛି ବନିତା
ବୟସ ଖେଳୁଛି ଉଜାଣି
ପ୍ରେମ ଓ ପ୍ରଣୟ ସଞ୍ଜ ଥା ।

ମୁଁ ଆୟତ୍ତରେ ନାହିଁ ନିଜର, କାହାର
ବିସର୍ଜି ଦେଇଛି ମନ
ପ୍ରେମ ବୃନ୍ଦାବନର ଗଭୀର ଜଳରେ
ଏତିକି ବେଳକୁ କବିତା କଥା
ଗ୍ରାସି ଯାଉଛି ବ୍ୟାକୁଳତା

ମୁଁ ଆୟତ୍ତରେ ନାହିଁ ନିଜର, କାହାର ।



# ଶରଣାର୍ଥୀ

ମୁଁ ଯେତେବେଳେ ଦେଖେ
ସମୁଦ୍ରରେ ହିଁ କରୁଥାଏ ବର୍ଷା
ଓଦା ବେଳାଭୂମି
ସନ୍ତସନ୍ତିଆ ପବନ
ନୋଳିଆଙ୍କ ଝାଳଗନ୍ଧ ରୁନ୍ଧିହୁଏ
ପ୍ରଶ୍ୱାସରେ ।

ମରୁଭୂମିରେ ନଥାଏ ବର୍ଷାର ନାମଗନ୍ଧ
ତମ ଓଠ ପରି ସଜଳ
କବିତାର କୋଳ
ଯଂତ୍ରଣା ଫାଟୁଥାଏ ଦିହରେ
ତାତି ଭରୁଥାଏ ହୃଦୟ ଭିତରେ
ସଂସାରସାରା ଖୁନ୍ଦିହୁଏ
ଚାଖଣ୍ଡେ ଜାଗାରେ
ଲାଗୁଥାଏ ଯେମିତି ଆଉ ସ୍ଥାନ ନାହିଁ
ପୃଥିବୀରେ ।
ଶରଣାର୍ଥୀମାନଙ୍କୁ ଚିହ୍ନଟ କରାଯାଉଥାଏ ।

ବେଳେ ବେଳେ
ମନଗହନରେ ଉଠେ ଧୂଆଁ

ଆଇଁଷିଆ ଗନ୍ଧରେ
ପୁରିଯାଏ ସମଗ୍ର ବେଳାଭୂମି ।
ମନ ଜଳୁଥାଏ ନିଭୃତରେ
ବର୍ଷା ନଥାଏ
ବର୍ଷାର ଅପେକ୍ଷାରେ
ତୃଷିତ ମାଟି
ମେଲିଥାଏ ପାଟି
ପକ୍ଷୀ ଆକାଶରୁ
ଚକ୍କର କାଟି
ଗଡୁଥାଏ ଧୂଳିରେ ।

ସ୍ୱପ୍ନରେ ସ୍ୱପ୍ନରେ
ମୁଁ ଥାଏ ଧୁ ଧୁ ମରୁଭୂମିରେ
ଶରଣାର୍ଥୀମାନଙ୍କୁ
ଚିହ୍ନଟ କରା ସରିଥାଏ ।



# ଦିହକୁ ନୁହଁ ଆତ୍ମାକୁ

ତୁମ ଦିହକୁ ନୁହଁ
ଆତ୍ମାକୁ ଛୁଇଁବାକୁ ଚାହେଁ
ଜଙ୍ଗଲର ଅରମାକୁ ନୁହଁ
ନାଚୁଣି ଝରଣାର କଳକଳ ନାଦକୁ
ଶୁଣିବାକୁ ଚାହେଁ ।

ମୁଁ ବାଟ ଛାଡିଦେବାକୁ ପ୍ରସ୍ତୁତ
ସମସ୍ତ ପ୍ରେମିକାମାନଙ୍କୁ
ନଈକୂଳରୁ ଉଠି ଆସିଲିଣି
ସଂଧ୍ୟା ପୂର୍ବରୁ ପବନର ରମଣ ପାଇଁ ।

ତୁମେ ବେଧଡକ ନଈ ସହିତ
କଥା ହୋଇପାର
ସମୁଦ୍ରକୁ ଜଣାଇପାର ଦୁଃଖ
ସେ ଧୋଇଦେବ ତମର ନିର୍ଯ୍ୟାତନା
ଆକାଶର ତାରା ପରି
ବେଳାର ପାଦଚିହ୍ନ ପରି ।

ହାରିଯିବାର କାନ୍ଦ କାନ୍ଦ ଭାବ
ସଂଚରିଗଲେ ଆତ୍ମାରେ

ମୁଁ ଜିତିବାକୁ ଚାହିଁବି ନାହିଁ
ଅସହାୟ ପ୍ରେମର ଗଳିରେ
ତମକୁ ଛାଡିଦେବି
ଆଉ ଏକ କିଂବଦନ୍ତୀ ପାଇଁ
ଯିଏ ନଈ ହୋଇ
ଭସାଇ ନେବ ଈର୍ଷା, ହିଂସା
କଦାକାର ଭାବନା ସବୁକୁ
ସମୁଦ୍ରକୁ
ସ୍ୱପ୍ନ ଓ ସଂଭାବନା
ଆଶା ଓ ଆଶ୍ୱାସନାର
ଜୁଆର ହେଇ କବିତାଟେ ଗଢ଼ିବା ପାଇଁ ।

ଅସମ୍ଭାଳ ପୃଥିବୀର
ପଳାୟନ ପଥରେ ମୁଁ
ପୋତିଦେଇଛି ବିଜୟର ଝଣ୍ଡା
ଯେଉଁଠି ହସି ହସି
ଲୋଟି ପଡିବ ନାଚୁଣି ଝରଣା
ନୀଳଘନ ସମୁଦ୍ର ଜୁଆର
ମେଘ ମୁକ୍ତ ଆକାଶର
ଶାଳମହୁଲର ଘଞ୍ଚ ଜଙ୍ଗଲ
ଦିହକୁ ନୁହଁ ଆତ୍ମାକୁ ଛୁଇଁବ
ଅହଂକାରୀ ପବନ ।



# ପ୍ରତିବାଦ

ପ୍ରତିବାଦ କରିନି ବୋଲିତ
ବଞ୍ଚିଛି
ପ୍ରତିବାଦ କରିଛି ବୋଲିତ
ଜୀବନ ଚାଲିଛି
ଏଥର ଦୋଛକିରେ ତମେ
ଏ ବକ୍ତବ୍ୟକୁ ନେଇ ।

ଫଗୁଣ ଚୋରାଇ ନେଇଚି ନଈ
ଜଙ୍ଗଲ ଗିଳି ସାରିଚି ଦିଗନ୍ତ
ଆକାଶ ପେଟରେ ସାରା ସମୁଦ୍ର
କୁମ୍ଭୀର ହଜମ କରି ସାରିଛି ମାଙ୍କଡ଼ କଲିଜା

ଏଥର ଫେରିବା ମୂଳ ପ୍ରଶ୍ନକୁ
ପ୍ରତିବାଦ କରିବା
ଫଗୁଣ, ଜଙ୍ଗଲ, ଆକାଶ ଓ କୁମ୍ଭୀର
ବିରୁଦ୍ଧରେ
ଅଧିକାର ଫେରେଇ ଦେବା
ନଈ, ଦିଗନ୍ତ, ସମୁଦ୍ର ଓ ମାଙ୍କଡ଼ର

ପୋଡିଯାଇଥିବା ଡିଅଣ ପରି
ଏ କାହାଣୀ
ଗଢ଼ା ହେଉଥିବ ।
ବିନା ଶ୍ରୋତାରେ ଫିଙ୍ଗା ହେଉଥିବ ।

ପ୍ରତିବାଦ କରିପାରିଛି ବୋଲିତ
ଜୀବନ ଚାଲିଥିବ ।



# କାମନା ଗଛ

ମନର ଅରମାରୁ ଓହ୍ଲାଇ ଦେଲି
ପରସ୍ତ ପରସ୍ତ ଆସ୍ତରଣ
ଜଙ୍ଗଲ, ନଈ, ପାହାଡ, ସମୁଦ୍ର
ଝରଣା, ଧୂ ଧୂ ମରିଚିକା
ବୟସର ଛାପ
ଖୁବ୍ ସନ୍ତର୍ପଣେ ଶୈଶବର
କାନଭାସରେ ଫୁଟିଉଠେ
ବଂଧୁତାର ହାତ ପ୍ରସାରି
ଛୋଟ ଏକ ସ୍ମୃତିଚିତ୍ର
ସ୍ୱପ୍ନ ପରି ମଖମଲ
ଝରଣାର ସୁଅ ।

କାମନା ଗଛରେ ବାନ୍ଧିଛି ସୂତ୍ର
ଧୈର୍ଯ୍ୟ ଓ ବିଶ୍ୱାସକୁ ଗଣ୍ଠିକରି ଅପେକ୍ଷା
କିଶୋରୀ ଆସିବ
ନୀପବନର ବଂଶୀସ୍ୱନକୁ
ଅନୁସରି
ଉଜାଡିଦେବ ଜୀବନ
ଯୌବନ
ନିମଗଛର ଫୁଲପରି ।

ଗଛ ଯେଉଁଠି କଥା କୁହେ
ସେଠି ନୀରବ ଥାଏ ସମୁଦ୍ର
ସମୁଦ୍ର ଗର୍ଜି ଚେତାଇଦିଏ
ଅଧିକାର
ଗଛ ଚୁପ୍ ଚାପ କୁହେ
ଗର୍ଜନରେ ନଥାଏ ପ୍ରେମ
ନିରୀବତା ହିଁ ଜୀବନ
ପ୍ରେମର ଓଁକାର ।

କାମନା ଗଛରେ ଦାନାବାନ୍ଧେ
ଆଶା
ବନ୍ଧାସୂତାରେ ଅଟକିଥାଏ
ମଖମଲି କବିତାଟିଏ
ସ୍ମୃତିପରି
ସ୍ୱପ୍ନପରି
ଜଡ ଚେତନା ଭିତରେ
ପ୍ରଣବ ଝଙ୍କାର ପରି ।

କାମନାରୁ କାମନା
ସଂକ୍ରମୁଥାଏ ସମୟ
ବୟସ ସୂତାରେ ଜଙ୍କ ଲାଗେ
ସମୁଦ୍ର ଗର୍ଜନ ଗଛକୁ
ପ୍ରୀତିଫୁଲମାଗେ ।

ସ୍ମୃତିଚିତ୍ରଟିଏ
ସାରାଟା ଜୀବନ ମୋର
ପିଛା କରିଥାଏ
ସମୁଦ୍ର ବାଲିରେ
ପାଦଚିହ୍ନ ଲିଭାଇ
ସାରିବା ପରେ
କାମନା ଗଛରେ
ସୂତାଟିଏ ବାନ୍ଧେ ।

ମନର ଅରମାରୁ ଓହ୍ଲାଇ
ଆସେ ଜୁଆର
ମରୀଚିକା
ସ୍ୱପ୍ନ ଏବଂ ସ୍ମୃତି
ମୁହୂର୍ତ୍ତ ଟେକି ଧରୁଥାଏ
କାମନାର ଛତି ।



# ବାଘ

ବାଘ ଶିକାର ପାଇଁ
ପ୍ରସ୍ତୁତ କହ୍ନେଇ କାରିଗର ।

ଦେଖିଲା,
ବାଘ ରାଜାକୁ ଟାଣୁଛି
ସେ ଡେଇଁ ପଡିଲା
ବାଘ ମୁହଁକୁ
ହୁକୁମ ଥିଲା ପ୍ରଥମ ଗୁଳି
ରାଜାଙ୍କର ।

କହ୍ନେଇ ଦେଖିଲା
ବାଘ ଧରିଛି ରାଜାଙ୍କ ବନ୍ଧୁକ
ସେ ଡେଇଁଲା
ବାଘ ସହିତ ଧରାମରା ।

କହ୍ନେଇର ଗୁଳି ଫୁଟିଲା
ବାଘ ନିସ୍ତେଜ
କହ୍ନେଇବି ।

ରାଜା ହସିଲେ
ଆହା ବିଚାରା ଭଲ ଶିକାରୀ ଥିଲା
ଅଥଚ ଏଇ ବାଘଟା...
ମୋ ଗୁଳିର ପ୍ରତୀକ୍ଷାରେ ଥିଲା ।



## ଇସ୍ତାହାର

ନଈକୁ ଦେଖି ଲେଖି ହୁଏନା
ଇତିହାସ
ଆଁ ଭିତରେ ସବୁବେଳେ
ସୂର୍ଯ୍ୟାସ୍ତ ।

ନଈ ମୋର ଜୀବନର
ଦୋସର
ପ୍ରେମର ସନ୍ତକ
ଜୀବନମାନେ ଅରଣ୍ୟ
ସନ୍ତୁଷ୍ଟ ।

ଛଳଛଳ ଆବେଗ ଭିତରେ
ସ୍ମୃତିର ଘର
ଭିନ୍ନସ୍ୱର ଦେଖ, ସେଇଠି
ନଈର ମୂଳ
ଉପ୍‌ଚରିତ ହେବାର ବ୍ୟାକୁଳ ପ୍ରତ୍ୟୟ ।

ଭୟ ନଥାଏ ମନରେ
ଅରମାରେ
ସ୍ନେହ, ନଥାଏ ଦିହରେ
ଦାହରେ

ବ୍ୟାପ୍ତ ହେଉଥାଏ ଦୀର୍ଘଶ୍ୱାସ
ଶିରାପ୍ରଶିରା ଦେଇ ଗଛର
କାମନାର ସରୀସୃପ ରଙ୍ଗୁଥାଏ
ମାତାଲ ପରି ସାରା ଅରଣ୍ୟ ।

ପ୍ରକୃତିର ଆଖିରେ
ପୁଅଡୋଳା ପରି ଚକ୍‌ଚକ୍
ପ୍ରେମର ଅଙ୍କୁର
ନଈ, ଆଁ କରିଛି
ସମୟ ଦାଣ୍ଡରେ
ଭୋକ ଭିତରେ
ଦରଚିହ୍ନା ଅକ୍ଷର
ଜୀବନର ଇସ୍ତାହାର ।



## ବାଘ ପାଳଟିବା

ବାଘ ଚିତ୍ର ଦେଖି
ନାତୁଣୀ କହିଲା କେଟ ।
ଜେଜେ ଇଏ କେଉଁ
ଫରେଷ୍ଟର ନା ଜୁର ।

ଜେଜେ ହସିଲେ
ଜଙ୍ଗଲ କହିଲେ
କଣ ବୁଝିବ ମୁମ୍ବାଇର
ଅଣଓଡ଼ିଆ ନାତୁଣୀ ।

ସେ କହିଲେ ଜୁ'ର.....
ନାତୁଣୀ କହିଲା
ଚକୋଲେଟ ଖାଏନା
ଏ କେଟ ।

ଜେଜେ କହିଲେ
ଆମ ଘର ଏକ ଜୁ
ତୁ ସେଠି ବାଘ
ଆସ୍ ଚକୋଲେଟ୍
ସାଙ୍ଗ ହୋଇ ଖାଇବା
ବାଘ ପାଲଟିବା ।



# ନୂଆ ଏକ ସକାଳର ଚିତ୍ର

ନିଆଁ କେମିତି ଲାଗେ
ମନ କୁ ମନ  ବିଦ୍ରୋହ ପରି
ନା ପୁଞ୍ଜିଭୂତ ଅସନ୍ତୋଷର ବିସ୍ଫୋରଣ
ଗଦାଏ ପାଉଁଶ ଭିତରେ, ସୁରକ୍ଷିତ
ରକ୍ତ ରଞ୍ଜିତ  ।

ଏଇ ନିଆଁ ଦିନେ ଜାଳିଥିଲା
ମୋର ପରିବାର
ଏଇ ନିଆଁ ମୁମ୍ବାଇରେ ଆଣିଥିଲା ଆତଙ୍କ
ନିଆଁଲଗା ଟ୍ରେନରେ ଗାଇ ହୁଏ
ସିନେମାର ଗୀତ  ।

ଜମାଟ ବନ୍ଧା ଦୁର୍ନୀତିକୁ
ମନ୍ଦିର ମସଜିଦର ବୃଥା ଅହଂକାରକୁ
ବର୍ଷ ବର୍ଷ ଧରି ମେଦବୃଦ୍ଧି କରୁଥିବା
ଜହ୍ଲାଦମାନଙ୍କୁ
ଏ ନିଆଁ ଜାଳିପାରିନି, ଦୁଃଖ
ଅଫ୍‌ଶୋସ  ।

ନିଆଁ ଚରଚର ଚରିଯାଉ
ଜଙ୍ଗଲରେ ନୁହଁ ସହରରେ

ଜାଳିଦେଉ ବଳାତ୍କାରୀକୁ, ଭ୍ରୂଣ ହତ୍ୟାକାରୀକୁ
ଧର୍ମଧ୍ୱଜୀକୁ, ସେକ୍ସ ର୍‌ୟାକେଟର ରାଣୀମାନଙ୍କୁ
ପ୍ରତିଟି ଶିଖାରେ ପ୍ରତିଫଳିତ ହେଉ
କାଳସର୍ପର ଫୁତ୍କାର
ସହସ୍ର ସୂର୍ଯ୍ୟର ଦୀପ୍ତ କରବାଳ ।

ସିନ୍ଦୂରା ନ ଫାଟୁ
ଜଳିଯାଉ ନୂତନ ସୂର୍ଯ୍ୟାସ୍ତର ରଙ୍ଗ
ଅଳସୀ ନଈଟିଏ ବାଟ ଭାଙ୍ଗି
ରଚୁ ଭିନ୍ନ ଅଭିସାର
ବିଦ୍ରୋହର କୂଳଲଂଘି
ଶୁଣାଉ ସୃଜନର ନୂଆ ମନ୍ତ୍ର
ଯନ୍ତ୍ରସ୍ଥ ।
ଜୀବନ ଜୀବନ ଭଳି ନାଚି ଉଠୁ
ସମ୍ପର୍କ ସମ୍ପର୍କ ଭଳି ଫୁଟିଉଠୁ
ଧଳାଧଳା ଟଗରର ବିପଣୀରେ
ଲେଖାଯାଉ ରକ୍ତର ସଙ୍ଗୀତ
ନିଆଁର ଲେଲିହାନ ପଣତ
ଖୋଲିଦେଉ ନୂଆ ଏକ ସକାଳର ଚିତ୍ର
ବ୍ୟାକୁଳିତ ମୋହିତ ଶୁଚିସ୍ନାତ ।

ହାତମୁଠାରେ ନିଆଁ ଥାଉ ବଶମ୍ବଦ
ସୁରକ୍ଷିତ, ଚିର ସମର୍ପିତ ।



# କବିତାକୁ ନେଇ

କବିତାକୁ ନେଇ ହଜାରେ
କବିତା ।
କିନ୍ତୁ ଗୋଟିଏ ବି ଶବ୍ଦ କଣ
ବୁଝାଇପାରେ କବିତାର
ମାନେ;

ବାଗାର୍ଥ ପରି ସଂଶ୍ଳେଷରେ
ପାର୍ବତୀ ପରମେଶ୍ୱର
କବିତା ମଞ୍ଚରେ
ସରଳ ସାବଲୀଳ ଝରଣା ପରି
ଇନ୍ଦ୍ରଧନୁର ରଙ୍ଗପରି
କୋଇଲିର କୁହୁପରି
ପ୍ରେମିକାର ଅଭିସାର ପରି
ମା'ର ଲୁହପରି
ସ୍ନେହମୟ ପ୍ରୀତିପଦ
କବିତା ।

ପକ୍ଷୀ ଶାବକର ଖଣ୍ଡିଉଡ଼ା
ବାଘ ଛୁଆର ନୂଆ ଶୀକାର
ପୋଖରୀ ପାଣିରେ ଜାଆଁଳ

କିଲ୍‌ବିଲେଇ ହୁଏ ଶବ୍‌ଦ ପରି
ଅର୍ଥ ପଛରେ ।

ଥରେ ଅର୍ଥମୟ ହୋଇଗଲେ
ବିକଶି ଉଠେ ସମୟ
ଆକାଶ ଉଡାଣ
କେତେ ବାଗରେ ଚର୍ଚ୍ଚା ଚାଲେ
କାବ୍ୟତୀର୍ଥଙ୍କର ।

ସମୁଦ୍ର ରଂଗ ବଦଳାଉଥାଏ
ଝାଉଁବଣ ଗୀତରେ
ଆକାଶ ଥମ ଥମ ମେଘରେ
ନଇଁ ଆସୁଥାଏ ମାଟି ଚୁମିବାରେ
ପବନ ଗୀତ ଗାଉଥାଏ
ମୟୂର ନାଚୁଥାଏ
ପିଲାଙ୍କ ଖେଳରେ ସବୁବେଳେ
ସାମିଲଥାନ୍ତି ଦେବତା ।

ଶବ୍‌ଦ ବଦଳୁଥାଏ
ରଙ୍ଗ ବେରଙ୍ଗର ପୋଷାକ ପିନ୍ଧି
କବିତାକୁ ନେଇ ଲେଖା ସରିଥାଏ
ହଜାରେ କବିତା ।



# ଫାଟ

ଗଛ ଓ ଅରଣ୍ୟ ମଧ୍ୟରେ ଛପିଥିବା
ସଂପର୍କର ଫାଟ
ରାତି ଓ ରତିର ଉତ୍ତାପ ଭିତରେ
ଯୋଡ଼ି ହୋଇଯାଏ ।

କବି ରସାଳ କବିତାର ବିମ୍ବକରି
ଗଛକୁ କେବେ ତ
ଅରଣ୍ୟକୁ କେବେ ଓଟାରେ
ଅବୁଝା ଚିତ୍ରକଳ୍ପ ପରି ସରଳ
ଗଛ ବହୁରଂଗୀ ପାଲଟେ ।
ଜଣାପଡେନା ଅରଣ୍ୟ କିଏ
ଗଛ କିଏ ।

ଅନ୍ଧକାରର ବଶମ୍ବଦ ଭୃତ୍ୟପରି
ଶବ୍ଦ ରଙ୍ଗାଇଦିଏ କଳାରଂଗ
ଜୀବନ ଅନ୍ତରାଳରେ
ବିମୁଗ୍ଧ ବନ୍ଦୀଶାଳାରେ ପ୍ରେମିକା ସହିତ
ପ୍ରତିଟି ମୁହୂର୍ତ୍ତ
ନୂଆଁ ସ୍ୱପ୍ନରେ ମସ୍‌ଗୁଲ ଥିଲାବେଳେ
ଅରଣ୍ୟର ବିମ୍ବମାନେ ଫେରାର
ହୋଇଯାନ୍ତି ।

ଥୁଣ୍ଟାଗଛ ଅଗରେ ଶାଗୁଣାର ଅଣ୍ଟ
ଚକ୍‌ଚକ୍ କରେ ସୂର୍ଯ୍ୟାଲୋକରେ
ଭୋଗ ଓ ସଂଭୋଗର ସନ୍ଧିକ୍ଷଣରେ ।

ସତ ଗଛ ଓ ଅରଣ୍ୟଠାରୁ
କବିର ଚିତ୍ରକଳ୍ପରେ ଦୁର୍ବୋଧ୍ୟ
ହୋଇଉଠେ ଗଛ ଓ ଅରଣ୍ୟର ସଂପର୍କ
ବଢ଼ିଯାଉଥାଏ ଅସୂୟାର ଫାଟ
କାଉଁରୀ କାମାକ୍ଷର କୁହୁକ ବଳରେ
ଗଛ ଖର୍ବକାୟ ହୁଏ
ଅରଣ୍ୟହୁଏ ମରୁମୟ
ବିମ୍ବରେ ବିମ୍ବରେ ଦଂଶୁଥାଏ କଳାନାଗ
କଳାଦର୍ପଣରେ ଲିଭିଯାଏ
ଲୋଭନୀୟ ସ୍ୱପ୍ନର ପ୍ରଲେପ ।

ଗଛ ଓ ଅରଣ୍ୟର ସଂପର୍କର ଫାଟ
ଦାଉଦାଉ ଦିଶେ ଶବ୍ଦ ମାଡ଼ରେ
କବି ବିଚରା ଅନ୍ଧାରର ରଂଗନେଇ
ଚିତ୍ରୁଥାଏ
ଗହୀର ଫାଟ ଭିତରୁ ଦେଖୁଥାଏ
ନିଜ ମୁହଁ ବିଡ୍ ବିଡ୍ ହୋଇ
ହତାଶିଆ ସ୍ୱରରେ କୁହେ–
ଗଛ ଓ ଅରଣ୍ୟକୁ ସେମିତି
ରହିବାକୁ ଦିଅ,

ଶବ୍ଦର ବେଡ଼ିରେ ଚିତ୍ରକଳ୍ପର ବନ୍ଦୀଶାଳରେ
ଫୋପାଡି ଦିଅନା ।

ଗଛ ଓ ଅରଣ୍ୟ ମଧ୍ୟରେ ଥିବା
ସଂପର୍କର ଫାଟ
କ୍ରମଶଃ ଅଦୃଶ୍ୟ ହୁଏ
ଜାଣିହୁଏନା କିଏ ଗଛ
କିଏ ଅରଣ୍ୟ
ସବୁ ରଂଗମୟ
ସବୁ ଏକାକାର ।



# ତୁମେ ନିଶ୍ଚିନ୍ତ ରୁହ

ତୁମେ ନିଶ୍ଚିନ୍ତ ରୁହ ଆକାଶ
ମେଘର ବଜ୍ରନିନାଦ
ତୁମ ନିଦ ଭାଙ୍ଗିବନି
ତୁମେ ନିଶ୍ଚିନ୍ତ ରୁହ ପବନ
ଶହୀଦ ପତ୍ନୀକୁ ଦେବାକୁ ପଡିବନି
ଦୁଃଖଦ ବାର୍ତ୍ତା
ତୁମେ ନିଶ୍ଚିନ୍ତ ରୁହ ଅରଣ୍ୟ
ଆଉ ଶୁଭିବନି ବାଘର ହେଣ୍ଟାଳ
କାଠକଟାଳୀର ଦୁସ୍ୱପ୍ନ ପରି
ଭୋକିଲା ଚିତ୍କାର ।

ଏଥର ସମସ୍ତେ ପ୍ରେମରେ ମତୁଆଲା
ଆକାଶ, ପବନ, ଅରଣ୍ୟ
ଏଥର ମେଘ, ଦୁଃଖ, ମୃତ୍ୟୁ
ଶୀତଳ ଲାଗିବ, ପ୍ରେମିକାର
ସ୍ପର୍ଶପରି
ବର୍ଣ୍ଣମାଳାର ଗର୍ଭରେ
ସାଇତା ସୁପ୍ତ ଭ୍ରୂଣ ଗଜୁରିବ
ଶବ୍ଦର ଚାରା ହୋଇ
କବିତାର ଦ୍ରୁମ ହୋଇ ।

ଚମତ୍କାର ପ୍ରତିପତ୍ତିରେ ହସିବ
ଆକାଶ
ଶତ୍ରୁ ବୋମାରେ କାନ୍ଦିବନି ପବନ
କେହି ହେବେନି ଶହୀଦ
ସୀମା ନିଶ୍ଚିହ୍ନ ହେବ ଦେଶ
ଦେଶ ମଧ୍ୟରେ ମନ ମନ ମଧ୍ୟରେ
ସଂପ୍ରଦାୟ ସମ୍ପ୍ରଦାୟ ମଧ୍ୟରେ ।

ଶିଶୁମାନଙ୍କ ସଂଗୀତ
ଅନୁରଣିତ ହେବ ଗୋଟିଏ ଭାଷାରେ
ଅନ୍ୟକୁ ନିଜର କରିବାର
ଅଭିମନ୍ତ୍ରରେ
ସମସ୍ତ ପ୍ରାଚୀନ ପୁଡୁଗ ଖୋଲିବ
ପେଟରାର ଜଙ୍କଲଗା କଲୋପ
ଭାଙ୍ଗିଯିବ, କୋଥଳୀ ଭିତରୁ
ବାହାରିବ ମଣିଷର ସ୍ମିତ
ସ୍ମୃତି ନଈର ଧାରରେ ଖେଳିବ
ଭଲ ପାଇବାର ମୀନ ।

ସ୍ୱର୍ଣ୍ଣକାତର ସ୍ୱପ୍ନ ଭିତରେ
ଉକୁଟି ଉଠିବ ଲୋଡିବା ପଣର ଘା,
ସେ ଭିତରେ ଗମୁଥିବ
ମଣିମୟ ନାଆ
ତୁମେ ନିଶ୍ଚିନ୍ତ ରୁହ

ନାବିକ
ତୁମେ ନିଷ୍ଚିନ୍ତ ରୁହ
ପ୍ରେମିକ
ତୁମେ ନିଷ୍ଚିନ୍ତ ରୁହ
ଅଗ୍ରଦୂତ ।

ଉଦ୍‌ଗତ ଲୁହ ଝରଣା ହେବ
ଉତ୍‌ଫଣ କାଳ ଫଗୁଣ ହେବ
ଉତ୍‌କ୍ଷିପ୍ତ ଦୀର୍ଘଶ୍ୱାସ ମଳୟ ହେବ
ଜହ୍ନରାତିର ପ୍ରେମିଳ ଜୋଛନା ପରି ଶୋଷିନେବ
ମେଘ, ଦୁଃଖ, ମୃତ୍ୟୁକୁ
ମଧୁର ସ୍ମୃତି ଧାରାରେ
ଆରମ୍ଭ ହେବ ବର୍ଣ୍ଣମାଳା
ଶୋଷ ବି;
ଥମଥମ ଆକାଶର ମେଘ
ବର୍ଷିବ କବିତା
ପ୍ରେମ ବି ;

ନିଷ୍ଚିନ୍ତ ରୁହ ତମେ
ବୋମା ଫୁଟିବ ନାହିଁ କେବେବି
ଫୁଲ ବର୍ଷିବ
ଫଗୁଣ ବି ।



# ଆକାଶରେ ରଙ୍ଗ ମହୋତ୍ସବ

ଆଜି ସାରା ଆକାଶରେ ରଙ୍ଗ ମହୋତ୍ସବ
ଫୁରୁଫୁରୁ ଗେଣ୍ଡାଳିଆ ପର
ଝାଡି ଦିଏ ଲଂପଟ ପବନ ।

ପ୍ରସ୍ତ ପ୍ରସ୍ତ ମେଘର ନୀଳିମା
ଆଖିତଳେ ଆଙ୍କିଦିଏ
କଳାଘୁମ କଜଳର ଦାଗ
ବର୍ଷାଭିଜା ମାଟିର ଶେଯରେ
ଝରଣାର ଅଳସୁଆ ନିଦ ।

ଢ଼େଉ ଢ଼େଉ ଅରଣ୍ୟର ପଣତରେ
ଅଭିସାରୀ ନାୟିକାର ସ୍ୱପ୍ନର ମୁରୁଜ
ଛମ ଛମ ବର୍ଷାଟୋପା ଗାଇଯାଏ
ମିଳନର ଶେଷହୀନ ଗୀତ ।

ଛଳଛଳ ଦିଗନ୍ତର ଲୁହ ତଳେ
ଆଙ୍କିଦିଏ ଖଳଖଳ ପ୍ରେମର ବସନ୍ତ
ଢ଼ଳଢ଼ଳ ପଲକରେ ମାଟିମୟ
ଶିଖାଟିଏ ପରମର ଦୃଶ୍ୟରେ ମୋହିତ ।

ସୂର୍ଯ୍ୟ ସହ ମେଘ ଖେଳେ
ଅପାଶୋରା ଗାଁ ଧୂଳି ମିଛ ଲୁଚକାଳି
କୁହୁଡ଼ିର ଚାଦର ଉଠାଇ
ଅରଣ୍ୟର ଦିଗ୍‌ହଜା ଦୃଷ୍ଟି
ଉଠଇ କୁରୁଳି ।

ବର୍ଷାଳୀର ସପ୍ତରଙ୍ଗ ହଜିଯାଏ
ଗୋଟିଏ ରଙ୍ଗରେ
ଇନ୍ଦ୍ରଧନୁ ସଜାହୁଏ ଗୋଟିଏ
ଋତୁରେ
ପ୍ରେମମୟ ମୁହୂର୍ତ୍ତରେ ଝୁଲୁଥାଏ
ଗୋଟିଏ ଗୋଧୂଳୀ
ସ୍ମୃତିର ବଗିଚା ସାରା ଶିଆଳୀର ଦୋଳି;

ଦୋଳିରେ ଝୁଲୁଛି ସେଇ
ଅଭିସାରୀ ନାୟିକାର ପ୍ରିୟ
ଦୋଳିରେ ଲୋଟିଛି ସେଇ
ଅପ୍ରାପ୍ତିର ଅଶରୀରୀ ଦେହ

ବଗିଚାରେ ଶୁଭେ ଖାଲି
ଶୁଭଶଂଖ ଚଢ଼େଇର ରାବ
ସାରାଟା ଆକାଶ ଆଜି
ରଙ୍ଗ ମହୋତ୍ସବ ।



# ବଞ୍ଚିବାକୁ ଦିଅ

ନିଜ ନିଜ ଭିତରର ଜଙ୍ଗଲକୁ
ବଞ୍ଚିବାକୁ ଦିଅ
ଲୁହଦେଇ
ସ୍ୱେଦଦେଇ ;

ବାଘ ହେଣ୍ଟାଳ ଶୁଭୁଥାଉ
ମନ ଅରମାରେ
କୋଇଲିର କୁହୁ ମନ ମୋହୁଥାଉ
ହୃଦୟର ସହକାର ଡାଳେ
ଶାଗୁଣାବି ବସିଥାଉ
ଥୁଣ୍ଟା ବିବେକ ଅଗରେ ।

ଯେତେ ଦିନ ଯାଏ ନିଜ ଭିତର
ଜଙ୍ଗଲ ସାବ୍‌ଜା ଥିବ
ସେତେଦିନ ନିରୀହ ପ୍ରଜାପତି ପରି
ଉଡିବୁଲୁଥିବ ଜୀବନ
ଜଙ୍ଗଲ ବଢୁଥିବ ହୃଦତଳର ଜଞ୍ଜାଳ ଭିତରେ
ଛାଇପରି ଅପରାହ୍ନର ଆଲୋକରେ
ଅନ୍ୟକୁ କୋଳେଇ ନିଜର କରିନେବ
ଅନ୍ୟକାର କଷ୍ଟକୁ ଅନୁଭବିବ

ଅରମା ଭିତରେ ବସା ବାନ୍ଧିଥିବ ଗୁଣ୍ଡୁରି ଚଢ଼େଇ
ମାଟି କୁ ଛୁଇଁ ଡେଉଁଥିବ ତ
ଶାବକ କରୁଥିବ
କିଚିରିମିଚିରି ।
ବେଳେ ବେଳେ
ହୃଦ ତଳର ଜଙ୍ଗଲରେ
ବଢ଼ି ଉଠିବ ଶାଳ ବା
ଶାଗୁଆନ ଗଛଟେ
ଆକାଶକୁ ଛୁଇଁବାକୁ
ଚେଷ୍ଟା କରି
ଖାଇବ କୁରାଢ଼ୀ ଚୋଟ
କେତେ ଅନିଭୋଗ ଭିତରେ
ପର ପାଇଁ
ଭୋଗୁଥିବ କଷ୍ଟ
ଅନ୍ୟର ଦୁଃଖକୁ ନିଜର
କରି ନେଲେ
ଛନଛନେଇଯାଏ ଜଙ୍ଗଲ
ପୁଷ୍ପିତ ହୁଏ ବୃକ୍ଷ
ନିଗିଡି ଆସେ ସମବେଦନାର ଲୁହ;

ନିଜ ଭିତରର ଜଙ୍ଗଲକୁ
ବଞ୍ଚିବାକୁ ଦିଅ ।



# ନାଁରେ କ'ଣ ଥାଏ

ଗଛ  ବା ମାଛ
ନାଁରେ କଣ ଥାଏ
ସବୁ କିଛି ଥାଏ
ଅନୁଭବରେ  ।

ଗୋଟିଏ ଗୋଟିଏ  ଶବ୍ଦରେ
ଲୁଚିଥାଏ ଗୋଟିଏ ଗୋଟିଏ ଗପ
ଗପରେ ଥାଏ ବିଳାପ
ବିଳାପକୁ ଉଖୁରାଇଲେ
ଉକୁଟି ଉଠେ ଜ୍ୱଳନ
କବିତାର ପ୍ରତିଫଳନ  ।

ପବନ ହେଉ ବା
ତୋଫାନ
ପକ୍ଷୀ ଶିଆରକାଟି
ଉଡୁଥାଏ  ।

ଶୂନ୍ୟ ମେଘରେ
ସ୍ୱପ୍ନର ନିର୍ବାସନରେ
ଶବ୍ଦର ନିର୍ବାଣରେ

ସମ୍ଭାବନାର ଅଙ୍କୁରୋଦ୍ଗମ ହୁଏ
ନାଁରେ କଣ ଥାଏ ।

ଶବ୍ଦରେ ଶବ୍ଦରେ
ସଂଚରୁଥାଏ ଅସ୍ତରାଗର ଚିତ୍ର
ଅନୁଭବରେ ଅନୁଭବରେ
ବିକଶୁଥାଏ ଆତ୍ମାର କୈବଲ୍ୟ
ସବୁକିଛି ପୂର୍ବ ନିର୍ଦ୍ଧାରିତ
ଜହ୍ନର ଅଗଣାରେ
ଲୁଚକାଳି ଖେଳୁଥାଏ
ଶବ୍ଦର ନକ୍ଷତ୍ର ।

ନାଁରେ କଣ ଥାଏ
ପରିଚୟର ଦସ୍ତାବେଜରେ
ସମୟ ହରଦମ କରୁଥାଏ
ଦସ୍ତଖତ ।



# ଭୁଲି ପାରେନା

ଭୁଲି ପାରେନା କେବେବି
ଗଛର ଛାଇ
ବ୍ରାହ୍ମଣୀର କାଚକେନ୍ଦୁ ସୁଅ
ତମର ହସ
କବିତାର ରୂପ ।

ଦୁନିଆରେ ଅମେରୁଦଣ୍ଡୀ
ପ୍ରାଣୀଟିଏ ପରି
ପର ଆଶ୍ରାରେ ରଙ୍ଗୁଛି
କିଲ୍‌ବିଲ୍ ସଂସାର ଜଞ୍ଜାଳ
ଭିତରେ ନିଥର ଟାଙ୍ଗରା
ପାହାଡ ପରି
କବିତା ରଚୁଛି ।

ପହିଲି ବର୍ଷାରେ ମାଟି
ପହିଲି ପ୍ରେମରେ ହୃଦୟ
ପହିଲି କବିତାର ଶବ୍ଦ ପରି
ମହୁ ମୁହାଣ
ଏଠି ଅଛି ଏଠି ନାହିଁ
ଲୁଚକାଳି ଖେଳ

ଜହ୍ନ ରାତିରେ ଠିଆ
ସ୍ନେହ କାଙ୍ଗାଳ ଗଛ ପରି
ସ୍ପର୍ଶକାତର ।

ବାଟବଣା ଶବ୍ଦ ସବୁ
ଦିଗହଜା କୁହୁଡି ସବୁ
ମେଳିକରି ଠିଆ ହୁଅନ୍ତି
ଏରୁଣ୍ଡି ସେପଟେ
ଏପଟେ ସମୟହୁରୁଡା
ପରାସ୍ତ କବିଟିଏ
ଉଦୁଉଦିଆ ଜ୍ୟେଷ୍ଠ
ଅପରାହ୍ନର
ଚିତ୍ର ଆଙ୍କୁଥାଏ ।

ରକ୍ତରୁ ଓହ୍ଲାଇ ସାରିଥାଏ
ସ୍ନେହ
ଗଛରୁ ଉଡିଯାଇଥାଏ
ପକ୍ଷୀ
ଆକାଶରୁ ବତୁରି ପଡେ
ମେଘ
ତ ସମୁଦ୍ର ରଙ୍ଗ
ଫିକାପଡେ
ଗଛର ଆବାହନୀ
ସଙ୍ଗୀତ ଧରି ରଖିପାରେନା

ତନ୍ଦ୍ରାଳସା ବର୍ଷାର
ମହ୍ଲାରକୁ ।

ତରଙ୍ଗର ଉତ୍ତାଳ ଯୌବନ
ଭୁଲି ପାରେନା ସମୁଦ୍ରକୁ
ଗଛରେ ଝୁଲୁଥିବା ବସା
ଭୁଲି ପାରେନା ପକ୍ଷୀକୁ
ମେଘ ଓହଳା ଆକାଶ
ଭୁଲି ପାରେନା ମାଟିକୁ ।

ସମୁଦ୍ର ପକ୍ଷୀ ଓ ମାଟିକୁ
ନେଇ ପ୍ରେମର ସଂସାର
ତମ ହସରେ ଏମାନଙ୍କ
ଫେଣ୍ଟାଫେଣ୍ଟି ଚିତ୍ରପଟ ।

ଭୁଲିପାରେନା ଗଛ ପକ୍ଷୀ
ମାଟି ଓ ଆକାଶ
ବ୍ରାହ୍ମଣୀର ମନଲୋଭା ସୁଅ
ତୁମ କୁଟିକମ ହସ ।

❖❖❖

# ମୋ ସତ୍ତା

ମୋ ସତ୍ତା
ଆକାଶର ସୂକ୍ଷ୍ମ ଆଚ୍ଛାଦନରେ
ଅନ୍ଧାରରେ ସିନ୍ଦୂର ପରି
ଲେଲିହାନ
ସୂର୍ଯ୍ୟଚନ୍ଦ୍ର ନକ୍ଷତ୍ର ପରି
ହାଲ୍ଲୋଳମୟ ଦୂରଦୂରାନ୍ତ
ଆଖିପଟଳରେ ସ୍ଥିର ।

ଅନ୍ତିମ ସାନ୍ତ୍ୱନା ପରି
ମାଟିର ଦୁଃଖ ସଂଚରି ସାରିଥାଏ
ଉଚ୍ଛ୍ୱସିତ ପ୍ରକୃତିର ପ୍ରାଣରେ
ମୋ ସତ୍ତାର ଅନୁପମ ରୂପ
ପ୍ରେମମୟ କାମନାରେ ସାକାର ହୁଏ
ଅନୁଭବ ଓ ଆହ୍ଲାଦରେ
ଜନ୍ମ ଜନ୍ମର ସ୍ମୃତି ଓ ବିସ୍ମୃତିକୁ ନେଇ
ସ୍ଫଟିକରେ ସୂର୍ଯ୍ୟାଲୋକ ପରି
ଚିତ୍ରିତ ଶବ୍ଦମୟ ସତ୍ତାଟିଏ
ସୂକ୍ଷ୍ମରୁ ସୂକ୍ଷ୍ମତର ହୁଏ
ସ୍ତବ୍ଧ ଆତ୍ମାର ଛଟପଟ ଦରଜର
ପଟଳରେ ଧୀର ସଂଗୀତଟିଏ ପରି
ଅନୁରଣିତ ହେଉଥାଏ ।

ମୋ ସତ୍ତା
ମାଟିରୁ ଜୀବନ୍ୟାସ ପାଇ
ଆକାଶରେ ମିଶୁଥାଏ ବାରବାର
କେତେ ଜନ୍ମର
କେତେ ପ୍ରାରବ୍ଧର ଅନୁକମ୍ପା ନେଇ
ସ୍ୱୀକୃତିହୀନ ପ୍ରେମ ପରି
ଝୁଲି ରହିଥାଏ
ଦରଜଭରା ଆତ୍ମାରେ
ଶାଣିତ କ୍ଷତର ସ୍ୱାକ୍ଷର ପରି
ବିମ୍ୱିତ ହେଉଥାଏ
ଛାଇ ଆଲୁଅର ଗୀତଟିଏ
ଆକାଶ ଫଟାଇ
ମାଟିକୁ ତିନ୍ତାଇ
ଗାଉଥାଏ
ଉଚ୍ଛ୍ୱସିତ ଆବେଗର
ଚିନ୍ତନରେ ।

ମୋ ସତ୍ତା
ଫୁଲଟିଏ ପରି ଫୁଟିଥାଏ
ଦୂରନ୍ତ ଆକାଶରେ
ନକ୍ଷତ୍ର ପରି
ଲେଲିହାନ ସିନ୍ଦୂର
ଗୋପାଟିଏ ।

❖❖❖

# କ୍ରମଶଃ କବିତା

ଗହଳିଆ । ଅଫୁରନ୍ତ ସବୁଜ ଫୁଆରା ।

ଗଛ ବଢୁଛି ଆକାଶକୁ ମାଡି
ମାଟିଟିରି ।

ଗଛ ଅଗରେ ପକ୍ଷୀଟିର ବସା
ହଲୁଛି ପବନରେ
ଗୀତଗାଉଛି ମେଘ
ସଂଗତ କରୁଛି ବିଜୁଳି
ପକ୍ଷୀ ଅପେକ୍ଷା କରିଛି
କିଛି କହିବ
ତୋଫାନରେ ଉଡାଇଦେବ
କିଛି ଶବ୍ଦ
ଅନେକ ଅନେକ ବର୍ଷ ପରେ
ଶବ୍ଦ ଗଜୁରିବ
ଗଛପରି
ଆମ୍ଭାକୁ ଚିରି
କ୍ରମଶଃ ରୂପାନ୍ତରିତ ହେବ
କବିତାରେ;

ମଳୟ ହେଉବା ତୋଫାନ
କବିତା କହିଲେ ମୂଳ ପବନକୁ
ବୁଝାଏ ।
ଆକାଶ ହେଉବା ମାଟି
ଜୀବନ କହିଲେ ମଝି ମଝିକା
ଶୂନ୍ୟସ୍ଥାନକୁ ବୁଝାଏ ।

ମାଟି ବୁକୁରେ ବେଳେ ବେଳେ
ନଈ ଚାଲେ ଛୁରୀ ପରି
ଏପଟେ ଆହାର ଲୋଭି
ବିଲୁଆ
ସେପଟେ ରସାଳ ଆଖୁ କ୍ଷେତ
ଏପଟେ ମୁଁ ଡାହାଳ ପ୍ରେମିକ
ସେପଟେ କନକଗୋରିର
ଚିତ୍ରପଟ୍ଟ ।

ଅନେକ ପଥପରେ ପଡେ
ନଈ
ନଈ ପରେ ପାହାଡ
ପାହାଡ ସେପଟେ ଥାଏ
ଅରମା ଜଙ୍ଗଲ
ଜଙ୍ଗଲରେ ଡେଙ୍ଗା
ଶାଳଗଛ
ଗଛରେ ବସା

ବସାରେ ଜୀବନ
ଉପରେ ଶୂନ୍ୟ
ତଳେ ଶୂନ୍ୟ ।

ଗଛବଢ଼େ ପ୍ରେମପରି
ନଈବଢ଼େ ଶବ୍ଦ ପରି
କ୍ରମଶଃ କବିତା ଗଳୁରେ
ଆକାଶ ଓ ମାଟିର ଶୂନ୍ୟତା
ଆବୋରି ।



# ଗଛର ଗଜଲ

ଅରଣ୍ୟର କୁହୁଧ୍ୱନି ଚଂଛାଣ ଚାହାଣୀ
ବାଘର ହେଣ୍ଟାଳ ପରି ଭୟାନକ ଭୋକ
ରକ୍ତରେ କଉଡି ଖେଳେ
ମିଳନର ମହାଲଗ୍ନେ କଣ୍ଟାଝଟା
ଆଡେଇ ଆଡେଇ ।

ଆଶାର ଦୟନୀୟ ପତ୍ର ଝଡା ପରେ
ଆଦିଗନ୍ତ ପୁରିଯାଏ ପୂର୍ଣ୍ଣମୀ ଜହ୍ନର
କିରଣ ଆଭାରେ ଅହରହ ଆତ୍ମାର ବିଳାପ ପରି
ଗାଉଥାଏ ଅଶାନ୍ତ ଚଢ଼େଇ...

ଜୀବନରେ ପାପ ଭରା ଗୁଳ୍ମଲତା
ପ୍ରେମ ପୁଣି ହରିଣୀର ଖେଳ
ଝରଣାର କୁଳୁକୁଳୁ ରାଗିଣୀରେ
ମୁକ୍ତିଗୀତ ଗାଇ
ଜନ୍ମ ମୃତ୍ୟୁ ମଝିଧାରେ ଖୋଜୁଥାଏ
ପଥ କାହିଁ ଗତିମୁକ୍ତି କାହିଁ ।

ବିରହର ଶଯ୍ୟା ପରେ ଦୋହଲାଇ
କାକକୃଷ୍ଣ ବେଣୀ
ସନ୍ଧ୍ୟା ଆସେ ଦୁଃଖର କାହାଣୀ ପରି

ଜଙ୍ଗଲର ଧାରେ ଧାରେ
ଗଛଲତା ମାଡି
ପାହାଡିଆ ଘାଟି ପରେ ଘାଟି
ଅତିକ୍ରମୀ ।

ପ୍ରେମର ପରଳ ମାଡି ଦିଶେ ନାହିଁ
ରାସ୍ତାଘାଟ ଚନ୍ଦ୍ରଧୁଆ ରଜନୀରେ
ତାରକାର ସ୍ୱପ୍ନପରି ଆକାଶରେ
ସ୍ମୃତି ସବୁ ଖଞ୍ଜା ହୋଇଥାଏ ।
ମୃତ ଇତିହାସ ତଳୁ ମୁହଁ ଟେକେ
ଉଜୁଡା ଅରଣ୍ୟ
ଯୌବନର ବାଣୀ ସ୍ତବ୍ଧ ଦୁଃଖୀ ରଙ୍କି
ଶୋକାକୁଳ ମହାବାତ୍ୟା ପରର ମଣିଷ ।

କାଦମ୍ବରୀ ପାନ କରି ଶୋଇଛନ୍ତି
ନଗ୍ରଜନ, ଅନ୍ତହୀନ ଶୋକପରି
ଘୁମୁରୁଛି ଶାଳବଣ
ସୁଖକୁ ଉଜେଇସାରି ମଣିଷର କମନା ସାଗରେ
ନିଜର ଉଚ୍ଛିଷ୍ଟ ଭୁଞ୍ଜି
ପ୍ରାରବ୍ଧକୁ ଉପଭୋଗ କରେ ।

ସମୁଦ୍ରରେ ବାଟବଣା ପାଲଟଣା
ବୋଇତ ଦୁଃଖରେ
ଚିହ୍ନା ଚିହ୍ନା ଅଥଳ ସମୁଦ୍ର

ଚିହ୍ନା ଚିହ୍ନା ଅସୀମ ଆକାଶ
ହାହାକାର ଅରଣ୍ୟରେ ପଥହରା
ଅଚିହ୍ନା ମଣିଷ ।

ସ୍ୱାର୍ଥର ମୀନାର ପାଇଁ ପୋତିଚାଲେ ଜଙ୍ଗଲରେ
ଧ୍ୱଂସର ପତାକା
ଲେଣ୍ଡମାଇନ ତୋପଗୁଳି
ରାସ୍ତା ସାରା ବିଛା
ଅସୁରକ୍ଷିତ ଗଛ ଓ ଜଙ୍ଗଲ
ସଂସାରର ଲହୁ ପିଇ
ଗଛ ଲେଖେ ଆଦିମ ଗଜଲ ।



# ସ୍ପର୍ଶ

ଗାଈଗୋରୁ ଖାଇଲେବି
ତାଙ୍କ ସ୍ପର୍ଶ
ଅମୃତ ଉଲ୍ଲାସ
ହାତୀ ହରୀଣର ସହବାସ
ସ୍ୱର୍ଗ ସୁଖ
ନି ପାରିଲା ସଂସାରରେ
ମଳୟ ପରଶ ।

କଅଁଳୁଥାଏ ବାରବାର
ତାଙ୍କ ପାଇଁ ନିଜକୁ ଉଜାଡି
ସଜାଡେ ସଂସାର
ତାଙ୍କ ପାଇଁ ଏ ଜୀବନ
ଯୌବନ ସକଳ ।

ମଣିଷର ଦୀର୍ଘଶ୍ୱାସ
କାଳବୈଶାଖୀ ପରି
ଗ୍ରାସିଯାଏ ତନୁମନ ସମଗ୍ର ଶରୀର
ପ୍ରତି ଲୋମକୂପେ
ଧ୍ୱଂସର ସଂଗୀତ
ଲାଗେ ମୋତେ
ବିଷ ଖାଲି ବିଷ ।

ପଶୁଙ୍କର ଶତ୍ରୁତାଠୁ
ମଣିଷ ମିତ୍ରତା
ଅତି ଭୟଙ୍କର
ସେମାନେ ଲୋଡନ୍ତି
ଡାଳ ଆଉ ଫଳ
ମଣିଷ ଉଜାଡି ଦିଏ ମୂଳ
ପ୍ରାରବ୍ଧ ସକଳ ।

ମଣିଷର ହିଂସ୍ରତାରେ
ଧ୍ୱଂସର ତାଣ୍ଡବ
ପଶୁର କ୍ରୁରତାରେ
ଅଭିନବ ସୃଜନର
ସ୍ନିଗ୍ଧ ବଂଶୀସ୍ୱନ ।

ହେ ମଣିଷ
ସ୍ନେହ ତୋର ଲୋଡା ନାହିଁ
ଲୋଡାନାହିଁ ପ୍ରତାରିତ
ପ୍ରୀତିର ପରଶ,
ପଶୁଙ୍କ ଅହାର ହେଲେ
ପ୍ରଶମିତ ହେବ ମୋର
ଆତ୍ମାର ଦହନ
ଗଜୁରିବ ପ୍ରତ୍ୟୟର
ସୁନେଲି ସୁବାସ ।



# ଗାନ୍ଧାରୀ

ମୋତେ ଉଜେଇଁ ଦେଲ
ରାଜସୂୟ ସ୍ୱପ୍ନରେ
ତମ ପଶା ପାଲିର ଗୋଟିକରି ।

ମୁଁ ଅନିନ୍ଦ୍ୟା ସୁନ୍ଦରୀ
ଉଆଁସୀ କନ୍ୟା
ଶରୀରେ ଶରୀରେ ମୋର
ଅଳସ ବନ୍ୟା ।

ତମ ରାଜନୀତିର ବ୍ୟୂହ୍ୟରେ
ତମ ଚକ୍ରାନ୍ତର ମଣିନାଗର
ବିବରରେ ଆକ୍ରାନ୍ତା
ଧର୍ଷିତା ମୁଁ
ଯୁଗଯୁଗ ଧରି ।

ପଣବନ୍ଦୀ ପରି
ଗୋଟିଏ ପରେ ଗୋଟିଏ
ବିବାହର ସିଡିରେ
ଉଠି ଶେଷରେ କ୍ଲାନ୍ତ
ରତିହୀନ ରାତି ।

ଅନ୍ଧତ୍ୱର ତୃଷା
ମେଣ୍ଟାଇବାକୁ ପିନ୍ଧିଲି
ରାଜବଧୂର କଣ୍ଟକ
ପୋଷାକ ।

ଅନ୍ଧର ଧର୍ଷିତା ମୁଁ
ପ୍ରେମହୀନ
ଜୈବିକ ବାସନାର ପୂର୍ତ୍ତି
ପାଇଁ ଉତ୍ସର୍ଗୀତ
କୁମାରୀ ଯୌବନ ।

ରାଜାର ଦାୟରେ
ସୌନ୍ଦର୍ଯ୍ୟ ମୋ
ନିମିତ୍ତ ମାତ୍ର
ବଂଶରକ୍ଷାର
ସଂକଳ୍ପରେ, ଭ୍ରୁଣ ଶତଖଣ୍ଡ
ଆକାଶ ପରି ପରିବ୍ୟାପ୍ତ
ଶୂନ୍ୟକୋଳ ।

ଆସ, ଦେଖ
ନାରୀଟିଏ ନିଆଁରେ
ମୌନ ପ୍ରତିବାଦରେ
ପାହାଡ ପାଲଟିଛି
ସ୍ୱାଧୀନତା ଡେଣାପିଟି

ଡାକୁଛି ଆକାଶକୁ
କଅଁଳ ଖରାକୁ
ଝଡ ଓ ମୃତ୍ୟୁକୁ ।



# ଗାଁ

ବ୍ରାହ୍ମଣୀ କୂଳରେ
ମୁଁ ଏକ ନିର୍ବାକ ବିହଙ୍ଗ
ବାସି ଚମ୍ପା ଫୁଲ ପରି
ତମ ଛଳ ଛଳ ଆଖିର ଭାଷାରେ
ପ୍ରତିଫଳିତ ହୁଏ ମଣିଷର ଭାଗ୍ୟ
ମୋର ପୂର୍ବଜନ୍ମର
ସୁକୃତ ।

ନିଛାଟିଆ ଆକାଶ
ଅମରିବଣ ସାଥୀ ମୋର
ଲକ୍ଷ୍ମୀଛଡା ସ୍ରୋତରେ
ଝଲସେ ଲିଭେ ଅତୀତ
ଏକା ଏକା ପ୍ରେମିକ
ବାହୁଡେ
ଲିଭିଯାଏ ସମ୍ରାଟର
ପହୁଡ
ଶୁଭିଯାଏ,
ଦରଦୀ କେଉଁ କବିର
ଆହା, ଆହା ଡାକ ।

ମୋ କୂଳର କରମଙ୍ଗା
ଖପରା କାତି ଖେଳରେ ମସଗୁଲ
ଗାଁ ପିଲା
ବୁଢ଼ା ବରଗଛ
ସାକ୍ଷୀ
ପଧାନ ଝିଅ ବରଣୀ ହେଲା
ସାହାଡାକୁ
କେଉଟୁଣୀ ମାଡ ଖାଇଲା
ଡାଆଣୀ ଅପବାଦରେ
ଗାଁ
ରହିଥିଲା ସେମିତି
ଆଜିକାଲିକା ପିଲେ
ଭୁଲିଗଲେଣି ତା'
ନାଁ ।



# ଜୀବନ ଆଡ଼କୁ

ଗୁରୁଣ୍ଡି ଗୁରୁଣ୍ଡି ସମୟକୁ
ପାରି ହେଲା ବେଳେ
ହଠାତ୍ ମୁଁ ପାହାଚ ଆରପଟେ ।

କ୍ରମଶଃ ଏରୁଣ୍ଡି ବଢୁଛି
ଚୌକାଠରେ ନୂତନତାର
ଅଂକୁର ପଲ୍ଲବି ଉଠିଲାବେଳେ
ଜାଣିପାରୁନି କେହି
ଦୁର୍ଲଭ ସ୍ମୃତିକୁ ସାଉଁଟି
ମଉଳା ଢେଂଫରେ ଥାପିଲା ବେଳେ
କୋଉଠି  ନା କୋଉଠି
ଫୁଟି ଉଠୁଛି ଲାଲ ଗୋଲାପଟିଏ  ।

ସାରା ଜୀବନ ଏରୁଣ୍ଡି ଏପଟେ
ଝର୍କା ଏପଟେ
କୋଷା ଭିତରେ ସଂକୁଚି
ନିଜ ଭିତରେ ନିଜେ;
ଏରୁଣ୍ଡି ସେପଟେ ସୂର୍ଯ୍ୟ
ମେଲା ଆକାଶ ଅନନ୍ତ
ଏପଟେ କ୍ରମଶଃ ସଂକୀର୍ଣ୍ଣ
ଅନ୍ଧଗଳିର ଆକର୍ଷଣ  ।

ଅନବରତ ଆଗକୁ ମାଡି ଯିବାର
ବ୍ୟଗ୍ରତା
କଦବା କେମିତି ଉଦାସ
ନିରୁପାୟ ସ୍ୱପ୍ନ ଭିତରେ
ଏକ ନୂଆ ସ୍ୱପ୍ନ
କ୍ରମଶଃ ଆକାଶ ଆଡକୁ
କ୍ରମଶଃ ଜୀବନ ଆଡକୁ ।



# କବିତା ପୂର୍ଣ୍ଣମୀର ଜହ୍ନ

କବିତା କହି ତମକୁ ପରଶି ପାରେନା
ଦୁଃଖ ଓ ଯନ୍ତ୍ରଣାର ଇସ୍ତାହାର
ଅଶ୍ଳୀଳ ଦୃଶ୍ୟପଟ୍ଟ
ବୀଭତ୍ସ କର୍ମକାଣ୍ଡର ପ୍ରହେଳିକା
ବା କୁଡ଼୍‌କୁଡ଼୍ ନର୍ଦ୍ଦମାର ପଚାଗନ୍ଧ ।

କବିତା କହି ତମକୁ ଦେଖାଏନା
ଅରମା ଗୁହାଳର ଅନ୍ଧକାର
ନାରୀର ଗୁପ୍ତାଙ୍ଗ
ଇକ୍ଷିକାରର ରୋମାଞ୍ଚ
ବା ହତ୍ୟା ଧର୍ଷଣର ବିଭୀଷିକା ।

ମାଂସର ବିଳାପ ଭିତରେ
କଟା ଗଛର ଶିଖାରେ
ଉକୁଟିଉଠେ ସୃଜନର ଯେଉଁ ମହାମନ୍ତ୍ର
ତାକୁ ହିଁ ସାଉଁଟୁଥାଏ
ବିଷ କଣିକାଟିକୁ ଆଡେଇଦେଇ
ଅମୃତ ପରଶେ
ହସେ ଉଲ୍ଲସେ ।

ଶବ୍ଦରେ ଶବ୍ଦରେ ମହୁ ବରଷେ ।

କବିତା କହି
ଲହୁଲୁହାଣ କରେନା
ଆମ୍ଭାକୁ
କବିତାରେ ଆମ୍ଭାକୁ
ଦିଏ ଚନ୍ଦନ
ଜୀବନକୁ ଜୀବନ୍ମୟ
କରେ ।

ପ୍ରତିଟି ଗଛରେ
ପୁଷ୍ପର ସଂଭାର
ସୋହାଗ ସିନ୍ଦୂର ।

କବିତା ମହକୁଥାଏ
ମହକଉଥାଏ ଜୀବନ
ପୂର୍ଣ୍ଣମୀର ଜହ୍ନ ।







**ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ**

ଜନ୍ମ : ୩୦-୧୨-୧୯୫୯

ଆମ ସମୟର ଚର୍ଚିତ କବି ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦଙ୍କ ସୃଜନର ପ୍ରତ୍ୟେକଟି ନିଃଶ୍ୱାସ ଶାଗୁଆ। ତାଙ୍କ କବିତା ଏକ ଅବସ୍ଥା, ଯେଉଁଠି ଆକାଶ ଭଳି ବିଜନତା ଏବଂ ବିଜନତାକୁ ମଧୁରତମ ରୋମାଣ୍ଟିକ୍ ମନ୍ମୟ କରିଛି ଅମୃତ ଅଭିପ୍ସା। ମିଥ୍ୟା ପାର୍ଥିବ ପ୍ରଣୟ ରୂପାନ୍ତରିତ ହୋଇଛି ଅର୍ଥଯୁକ୍ତ ସ୍ୱତଃସିଦ୍ଧ ସତ୍ୟ ରୂପରେ। ପ୍ରାୟ ସବୁ କବିତା ନେଇଛନ୍ତି ଜନ୍ମ ସଦ୍ୟୋଜାତ ବସ୍ତୁ ସହିତ। ଯାହା ବେଶ୍ ସ୍ପର୍ଶନଶୀଳ, ସାଂଗୀତିକ ଓ ସମସାମୟିକ। ତାଙ୍କ କବିତାରେ ସିମୀତତା କରିନାହିଁ ଆଲିଙ୍ଗନ ତୃଷାର ନୀରବତାକୁ। ପରିଚିତ ସ୍ମୃତି, ଆତୁର ମନ, ଆଶାଝରର ସଂଗୀତରେ ପ୍ରଗଲ୍‌ଭ। ଏ ପ୍ରଗଲ୍‌ଭତା କବିର ସହଚର ଚିରକାଳ। ଆଶାର ଯୌବନ ଯଦି ନ ରହିବ, ଜିଇଁବାରେ ରମଣରତ ହେବ କିପରି ଦେହର ସନ୍ନ୍ୟାସୀ? ଆଘ୍ରାତ ଆକାଶଟିଏ, ସଂସାରର ହାନିଲାଭରେ ତା ଯାଏ ଆସେ କେତେ? ସେ କେବଳ ଦର୍ପଣଟିକୁ ଅନାଇଥାଏ। ପ୍ରଲୋଭନ ରଜ୍ଜୁଟିଏ ହୋଇ ବାଂଧି ପକାଏ ସବୁ ପ୍ରତିଶ୍ରୁତିକୁ। ପ୍ରତିଶ୍ରୁତି ସବୁ ଆକାଶ ପରି ସୁନ୍ଦର, ମଧୁର ଓ ସର୍ଜ୍ଜନଶୀଳ ।

ଏହା କବିଙ୍କ ପଂଚମ କବିତା ସଂକଳନ। ଆଶା ପାଠକ ମହଲରେ ଏହା ଆଦୃତ ହେବ।

-ନକୁଳ ଚନ୍ଦ୍ର ସାହୁ